# ଆମ ପରିବେଶରେ ଅମୃତର ସନ୍ଧାନ

(ଔଷଧୀୟ ଉଦ୍ଭିଦ ଓ ତାର ଗୁଣାଗୁଣର ଟିପ୍ପଣୀ)



ସଂଗ୍ରାହକ ଓ ପ୍ରସ୍ତୁତ କାରକ :

ଗାନ୍ଧି ସେବାକେନ୍ଦ୍ର, କହ୍ନା

# ଆମ ପରିବେଶରେ ଅମୃତର ସନ୍ଧାନ

(ଔଷଧୀୟ ଉଦ୍ଭିଦ ଓ ତାର ଗୁଣାଗୁଣର ଏକ ଟିପ୍ପଣୀ)

*ସଂଗ୍ରହକ ଓ ପ୍ରସ୍ତୁତିକାରକ*

ଗାନ୍ଧିସେବା କେନ୍ଦ୍ର

ଜହ୍ନା, ଜି-ଯାଜପୁର

# ଆମ ପରିବେଶରେ ଅମୃତର ସଂଧାନ

(ଔଷଧୀୟ ଉଦ୍ଭିଦ ଓ ତାର ଗୁଣାଗୁଣର ଟିପ୍ପଣୀ)

ସଂଗ୍ରାହକ :
ଗାନ୍ଧିସେବା କେନ୍ଦ୍ର, ଜହ୍ନା
ଜି- ଯାଜପୁର

ପୁସ୍ତକ ପ୍ରସ୍ତୁତି :
ଗାନ୍ଧିସେବା କେନ୍ଦ୍ର, ଜହ୍ନା
ଜିଲ୍ଲା- ଯାଜପୁର

ପ୍ରକାଶନ :
ଗାନ୍ଧିସେବା କେନ୍ଦ୍ର, ଜହ୍ନା
ଜି- ଯାଜପୁର

ମୁଦ୍ରଣ ଏବଂ ଅକ୍ଷରସଜ୍ଜା :
ବ୍ୟାସନଗର ପ୍ରିଣ୍ଟିଂପ୍ରେସ୍
ଯାଜପୁର ରୋଡ୍
ଦୂରଭାଷ - ୨୦୧୮୨.

ପ୍ରକାଶ କାଳ :
ଜୁଲାଇ - ୧୯୯୭

# ଏ ବହିଟିର ଆବଶ୍ୟକତା ?

ଆମେ ଆଜି ବିଂଶ ଶତାବ୍ଦୀର ଶେଷ ଦଶନ୍ଧିରେ ଉପନୀତ । ଆଧୁନିକ ସଭ୍ୟତା ମନୁଷ୍ୟକୁ ସ୍ୱାସ୍ଥ୍ୟ ବିଷୟରେ ଏତେ ଦୂର ପରାବଲମ୍ବୀ କରି ଦେଇଛି ଯେ ସେ ପ୍ରାକୃତିକ ଜୀବନ କ୍ରମକୁ ଭୁଲିଯାଇଛି । ମନୁଷ୍ୟ ଗୋଟିଏ ଜୀବ ଯେ କି ତାର ସୃଷ୍ଟି ହେବା ଦିନଠାରୁ ଉଦ୍ଭିଦ ଓ ଉଦ୍ଭିଦ ଦ୍ୱାରା ପ୍ରଦତ୍ତ ସାମଗ୍ରୀଉପରେ ସର୍ବଦା ପ୍ରଭାବିତ ହୋଇଆସିଛି । ପ୍ରାକ୍ ଐତିହାସିକ କାଳରୁ ମନୁଷ୍ୟ ପ୍ରକୃତି ଦତ୍ତ ବସ୍ତୁଉପରେ ନିର୍ଭରଶୀଳ ହୋଇ ଏକଦା ସୁସ୍ଥ ଓ ଶାନ୍ତିରେ ବାସ କରୁଥିଲା । କିନ୍ତୁ ବିଜ୍ଞାନର ଅଗ୍ରଗତି ଫଳରେ କ୍ରମଶ ଆମର ପରିବେଶ ପ୍ରଦୂଷଣ ହେବାକୁ ଲାଗିଲା ଓ ତାର କୁ ପ୍ରଭାବ ପ୍ରାଣୀଜଗତ ବିଶେଷତ ସର୍ବଶ୍ରେଷ୍ଠ ପ୍ରାଣୀ ଭାବେ ବିବେଚିତ ହେଉଥିବା ମଣିଷ ଉପରେ ପଡ଼ିଲା । ରୋଗ ଶୋକରେ ଜର୍ଜରିତ ହୋଇ ସେ ଖୋଜିଲା ଆଶୁ ପ୍ରତିକାର । ଏହି ସମୟରେ ଆମ ଦେଶରେ ପ୍ରବେଶ କଲା ପାଶ୍ଚାତ୍ୟ ସଂସ୍କୃତି ଓ ତା ସହିତ ଅନେକ 'ପ୍ୟାଥି' ଯାହା ଆଜିର ଚିକିତ୍ସା କ୍ଷେତ୍ରରେ ପ୍ରଯୁକ୍ତ ହୋଇଛି । ମନୁଷ୍ୟ ଅତି ବୁଦ୍ଧିମାନ ହୋଇଥିବାରୁ ବିଭିନ୍ନ ରୋଗର ନିଦାନର ଉପାୟ ବାହାର କରିପାରିଛି । ଏବଂ ତା ପାଇଁ ଆଣ୍ଟିବାଇଓଟିକ ପ୍ରସ୍ତୁତ କରିପାରିଛି କିନ୍ତୁ ଏହା ଦୁର୍ଭାଗ୍ୟ ଯେ ଏହି ଔଷଧର ହାନୀକାରକ କ୍ଷମତା ବିଷୟରେ ଆମକୁ ପୁଣି ବିଚାର କରିବାକୁ ପଡୁଛି । ଆମ୍ଭେ ଚିକିତ୍ସା କ୍ଷେତ୍ରରେ ଯେତେ ଆଗକୁ ଆଗକୁ ମାଡ଼ି ଚାଲିଛେ ତାର ପାର୍ଶ୍ୱ ନିହିତ ପ୍ରତିକ୍ରୀୟା ପ୍ରତି ମଧ ସର୍ବଦା ସଜାଗ ରହିବାକୁ ପଡୁଛି ।

ଏହା ଆମର ଦୁର୍ଭାଗ୍ୟ ଯେ ବିଗତ କେତେ ଶତାବ୍ଦିଧରି ଆୟୁବେଦଭଳି ବିଶୁଦ୍ଧ ଚିକିତ୍ସା ପ୍ରଣାଳୀ ଉପରେ ବଜ୍ରପାତ ହୋଇଛି । ଆଜକୁ ପ୍ରାୟ ୬୦୦୦ ବର୍ଷ ପୂର୍ବରୁ ଋଗ ବେଦରେ ବିଭିନ୍ନ ଔଷଧିୟ ବୃକ୍ଷ ଓ ତାର ଉପାଦେୟତା ସଂମ୍ବନ୍ଧରେ ବର୍ଣ୍ଣିତ ହୋଇ ଆସିଛି । ଏହି ବେଦରୁ ଉଦ୍ଧୃତ ତଥ୍ୟ ଉପରେ ଭିତ୍ତିକରି ଖ୍ରୀଷ୍ଟପୂର୍ବ ୫୦୦ ବର୍ଷ ପୂର୍ବରୁ ଆଜିର ଆୟୁର୍ବେଦ ଏକ ପୂର୍ଣ୍ଣାଙ୍ଗ ଚିକିତ୍ସା ପଦ୍ଧତି ଭାବରେ ଆତ୍ମପ୍ରକାଶ କରିଥିଲା । ଦିନେ ଯେଉଁ ବନୌଷଧିର ପ୍ରୟୋଗ ଦ୍ୱାରା ଭାରତ ବର୍ଷର ଚିକିତ୍ସା କ୍ଷେତ୍ରରେ ଅନେକ ଖ୍ୟାତି ଥିଲା ଆଜି ତାହା ଲୁପ୍ତ ପ୍ରାୟ । ଏବଂ ଭାରତ ବାସୀ ତାର ପ୍ରୟୋଗକୁ ଭୁଲିଯିବାକୁ ବସିଲେଣି କିନ୍ତୁ ଅନ୍ୟାନ୍ୟ ଦେଶ ଯଥା- ପଶ୍ଚିମ ଜର୍ମାନୀ, ହଙ୍ଗେରୀ, ସୋଭିଏତ ଋଷ , ଇଣ୍ଡୋନେସିଆ,

ଚୀନ୍, ଜାପାନ ଆଦି ଦେଶରେ ଏହି ଔଷଧୀୟ ଉଦ୍ଭିଦ ଦ୍ୱାରା ଚିକିତ୍ସା ସମ୍ବନ୍ଧୀୟ ଅନୁସଂଧାନ ଏବଂ ସଫଳ ପ୍ରୟୋଗ ସକ୍ରୀୟ ଅଛି । ପାଶ୍ଚାତ୍ୟ ଦେଶରେ କେତେକ ଔଷଧୀୟଗୁଣ ଥିବା ବୃକ୍ଷକୁ ସଂରକ୍ଷଣ କରାଯାଉଥିବା ବେଳେ ଆମ ଦେଶରେ ତାହାର ଦୁରୁପଯୋଗ କରାଯାଉଛି । ଆମେ ସେଗୁଡ଼ିକୁ ଜାଳେଣି ତଥା ଅନ୍ୟାନ୍ୟ ଆସବାସ ପତ୍ର ଓ ଗୃହଉପକରଣ ରୂପେ ବ୍ୟବହାର କରି ଚାଲିଛୁ । ଦିନେ ଯେଉଁ ପାହାଡ଼ ପର୍ବତ, ବଣ ଜଙ୍ଗଲ ଔଷଧୀୟ ବୃକ୍ଷ ଲତାରେ ଭରପୂର ଥିଲା ତାହା ଆଜି ଲୁପ୍ତ ହେବାକୁ ବସିଲାଣି । ଏହାର ସରଂକ୍ଷଣ ଆବଶ୍ୟକ ।

ଆମ୍ଭର ଏହି ଉତ୍କଳ ଦେଶରେ ବହୁ ପ୍ରକାରର ବୃକ୍ଷଲତା ଗୁଳ୍ମାଦି ରହିଛି ଯାହାର ମଧ୍ୟରେ ବିଭିନ୍ନ ଔଷଧୀୟଗୁଣ ଭରପୁର ହୋଇଛି । ଏସବୁ ଅତି ସାଧାରଣ ଦେଖାଗଲେ ମଧ୍ୟ ଏହାର ସ୍ୱକୀୟ ବିଶେଷ ଗୁଣ ଯୋଗୁ ରୋଗ ନିବାରଣ, ସ୍ୱାସ୍ଥ୍ୟ ବର୍ଦ୍ଧନ ଏବଂ ପରିଶୋଧନ କାମରେ ଆସନ୍ତି । ଚିକିତ୍ସା ଜଗତରେ ଏମାନଙ୍କର ଖୁବ୍ ପ୍ରାଧାନ୍ୟ ଅଛି । ଏହାମଧ୍ୟରେ ଖଣିଜ ପଦାର୍ଥ ଓ ରୂପାନ୍ତରିତ ବିଷ ମଧ୍ୟ ଅନ୍ତର୍ଭୁକ୍ତ । ଏ ସବୁକୁ ଚୂର୍ଣ୍ଣ, ସତ୍ତ୍ୱ, ବଟିକା, ଅବଲେହ, ଅର୍କ, ସୁରା, ଆରିଷ୍ଟ, ଆସବ ଆଦି ରୂପରେ ମୌଳିକ ଭାବରେ ଅଥବା ଅନୁପାନ ଭେଦରେ ପ୍ରୟୋଗ କରାଯାଏ । ଆୟୁର୍ବେଦ, ଏଲୋପ୍ୟାଥି ଆଦି ଅନେକ ଚିକିତ୍ସା ପଦ୍ଧତିରେ ଉପଚାରରେ ଏହି ସବୁ ଔଷଧୀୟ ପକ୍ଷ ଅଟେ । ଅନୁଷ୍ୟ ଅତି ପ୍ରାଚୀନ କାଳରୁ ଏହାର ଅନୁସନ୍ଧାନ ପ୍ରୟୋଗ ପରୀକ୍ଷଣ ଆଦି କରିଆସିଅଛି । ବିଧାତା ଦ୍ୱାରା ମନୁଷ୍ୟକୁ ପ୍ରଦତ୍ତ ଅନେକ ଉପହାର ମଧ୍ୟରେ ଏହାକୁ ଏକ ବରଦାନ କୁହାଯାଇପାରେ । ଏହାଦ୍ୱାରା ଶାରୀରିକ ବ୍ୟାଧି ଏବଂ ମାନସିକ ଆଧିର ନିବାରଣ ହୋଇଥାଏ ।

ଔଷଧ ଉଦ୍ଦେଶ୍ୟରେ ବ୍ୟବହୃତ ହେଉଥିବା ସମସ୍ତ ବନସ୍ପତି ସ୍ୱୟଂସଂପୂର୍ଣ୍ଣ ଅଟନ୍ତି । ଏମାନଙ୍କର ସଂରଚନା ଅନେକ ଯୌଗିକ, କ୍ଷାର, ରସାୟନ, ଖଣିଜ ଦ୍ରବ୍ୟର ସମ୍ମିଶ୍ରଣରେ ହୋଇଛି । ଏଣୁ ସେଗୁଡ଼ିକ ମଧ୍ୟରୁ ପ୍ରତ୍ୟେକଙ୍କୁ ପରିପୂର୍ଣ୍ଣ କୁହାଯାଇପାରେ । ମନୁଷ୍ୟ ନିଜେ ପୂର୍ଣ୍ଣ ଅଟେ । ମନୁଷ୍ୟ ପାଇଁ ଆବଶ୍ୟକ ସମସ୍ତ ତତ୍ତ୍ୱ ଏକ କାୟ କଳେବର ମଧ୍ୟରେ ବିଦ୍ୟମାନ ଅଟେ । ରକ୍ତ, ମାଂସ, ଅସ୍ଥି, ଚର୍ବି, ତ୍ୱଚା, ତନ୍ତୁ, ପାଚକ ଦ୍ରବ୍ୟ ଆଦି ରୂପରେ ବିଦ୍ୟମାନ ଅଛି । ସେ ସବୁ ଦ୍ୱାରା ହିଁ ଶରୀରର ସମସ୍ତ କାର୍ଯ୍ୟ ସମ୍ପନ୍ନ ହୋଇଥାଏ । ଠିକ୍ ସେହିପରି ଔଷଧୀୟ

ବୃକ୍ଷ, ଗୁଳ୍ମ, ଲତା ଆଦିର ପତ୍ର, ଫୁଲ, ଫଳ, ଓ କନ୍ଦ ଆଦିର ସଦ୍‌ବିନିଯୋଗ ହୋଇଥାଏ । ବିଶ୍ଳେଷଣ କରାଗଲେ ଜଣାଯାଏ ଯେ ସେଗୁଡ଼ିକ ମଧ୍ୟରୁ ପ୍ରତ୍ୟେକରେ ଅନେକ ରାସାୟନିକ ଘଟକରେ ସମାବେଶ ହୋଇଛି । ଫଳରେ ସେ ସବୁ ଯେଉଁ ଶରୀରରେ ପ୍ରବେଶ କରନ୍ତି ତାହାର ସମସ୍ତ ଆବଶ୍ୟକତା ଭଲଭାବରେ ପୂରଣ କରନ୍ତି ।

ସମଗ୍ର ପ୍ରକୃତି ଜଗତରେ ପ୍ରାୟ ଚାରିଲକ୍ଷରୁ ଅଧିକ କ୍ଷୁଦ୍ର ଗୁଳ୍ମ ଅଛନ୍ତି, ସେମାନେ ସମସ୍ତେ ଚିକିତ୍ସା ଦୃଷ୍ଟିରୁ ଉପଯୋଗୀ ଅଟନ୍ତି । ଏ ସମ୍ବନ୍ଧରେ ଏକ ବହୁପ୍ରଚଳିତ କଥା ଅଛି— ଥରେ ବ୍ରହ୍ମା ଜୀବକ ଋଷିଙ୍କୁ ଆଦେଶ ଦେଲେ - ''ପୃଥିବୀ ପୃଷ୍ଠରେ ବ୍ୟର୍ଥ ଦେଖାଯାଉଥିବା ପତ୍ର ଫୁଲ ଗୁଳ୍ମ, ବୃକ୍ଷ, ବନସ୍ପତି ସବୁ ଭାଙ୍ଗି ନେଇଆସ'' । ଏଗାର ବର୍ଷ ପର୍ଯ୍ୟନ୍ତ ପୃଥିବୀରେ ବୁଲି ବୁଲି ଋଷିବର ଫେରି ଆସିଲେ ଏବଂ ବ୍ରହ୍ମାଜୀଙ୍କ ନିକଟରେ ନତମସ୍ତକ ହୋଇ କହିଲେ ଭଗବାନ ! ମୁଁ ଏଗାର ବର୍ଷ କାଳ ସମଗ୍ର ପୃଥିବୀରେ ବୁଲିଲି ଓ ପ୍ରତ୍ୟେକ ଗୁଳ୍ମ ଲତା ଆଦିର ଗୁଣାଗୁଣ ପରୀକ୍ଷା କଲି । କିନ୍ତୁ ପୃଥିବୀରେ ଏପରି ଏକ ବୃକ୍ଷ ମିଳିଲା ନାହିଁ ଯାହା କୌଣସି ବ୍ୟାଧି ନିବାରଣରେ ସହାୟକ ନୁହେଁ । ଏହି କଥାରୁ ବୃକ୍ଷ ଓ ଗୁଳ୍ମ ଆଦିର ଔଷଧୀୟ ଗୁଣ ସହଜରେ ଅନୁମେୟ ।

ଅଦ୍ୟାବଧି ପ୍ରକୃତି ଜଗତରେ ରହିଥିବା ଚାରିଲକ୍ଷ ପ୍ରକାରର ଔଷଧୀୟଗୁଣ ସଂପନ୍ନ ବୃକ୍ଷ ଗୁଳ୍ମାଦି ମଧ୍ୟରୁ ମନୁଷ୍ୟ ମାତ୍ର ଆଠ ହଜାରର ଗୁଣ ଜାଣିବାକୁ ସକ୍ଷମ ହୋଇଛି । ଆଜି ପ୍ରଚଳିତ ଅଧିକାଂଶ ଔଷଧୀର ଜ୍ଞାନ ବିଶ୍ୱ ମାନସକୁ ଭାରତ ବର୍ଷ ଦେଇଛି । ଏହି କାରଣରୁ ଏହି ଖ୍ୟାତିକୁ ଚୀର ଜୀବିତ ରଖିବା ଭାରତର ଦାଇତ୍ୱ । ଏଣୁ ଆମ ଦେଶରେ ତଥା ଆମ ରାଜ୍ୟରେ ରହିଥିବା । କେତେକ ବିଶେଷ ଔଷଧୀୟଗୁଣ ସମ୍ପନ୍ନ ବୃକ୍ଷ ଓ ଗୁଳ୍ମାଦିର ଆଲୋଚନା ନିମ୍ନରେ କରାଗଲା । ଏହାର ସଂଖ୍ୟା ପଚାଶ ମଧ୍ୟରେ ସୀମିତ ରଖା ଯାଉଛି ।

ସମ୍ପାଦକ
ଗାନ୍ଧିସେବା କେନ୍ଦ୍ର

## ଆମେ ଯେଉଁ କେତୋଟି ଔଷଧୀୟ ଉଦ୍ଭିଦ ଉପରେ ଆଲୋଚନା କରିବା ।

୧. ଅଁଳା
୨. ଅର୍ଜୁନ
୩. ଅନନ୍ତମୂଳ
୪. ଅପମାର୍ଗ
୫. ଅପରାଜିତା
୬. ଅଶୋକ
୭. ଅଶ୍ୱଗନ୍ଧା
୮. ଅଶ୍ୱତ୍‌ଥ
୯. କରଞ୍ଜ
୧୦. କାଠଚମ୍ପା
୧୧. ଗୁଳୁଚି
୧୨. ଗଙ୍ଗଶିଉଳି
୧୩. ଘି କୁଆଁରୀ
୧୪. ଚିରାଇତା
୧୫. ଚମ୍ପା
୧୬. ଚିତାମୂଳ
୧୭. ତୁଳସୀ
୧୮. ତାଳମୂଳୀ
୧୯. ଦୁଦୁରା
୨୦. ଦୁବ
୨୧. ନିମ୍ବ
୨୨. ପଳାସ
୨୩. ପସାରୁଣୀ
୨୪. ପାଳଧୂଆ
୨୫. ପୁନର୍ନବ
୨୬. ପୋଦିନା
୨୭. ପୋକସୁଙ୍ଘା
୨୮. ବାହାଡ଼ା
୨୯. ବ୍ରାହ୍ମୀ
୩୦. ବାସଙ୍ଗ
୩୧. ବଉଳ
୩୨. ବରୁଣ
୩୩. ବେଲ
୩୪. ବାଇଡଙ୍କ
୩୫. ବାଡ଼ି ଅଁଳା
୩୬. ବରଗଛ
୩୭. ଭୂଇଁ କଖାରୁ
୩୮. ଭୂଇଁ ନିମ୍ବ
୩୯. ମୁଚୁକୁନ୍ଦ
୪୦. ମେଥୀ
୪୧. ଯଷ୍ଟିମଧୁ
୪୨. ରାସ୍ନା
୪୩. ଶତାବରୀ
୪୪. ଶୁଣ୍ଠୀ
୪୫. ଶମୀ
୪୬. ହରିଡ଼ା
୪୭. ହଳଦୀ
୪୮. ହିଙ୍ଗୁଳ
୪୯. ହାଡ଼ଭଙ୍ଗା
୫୦. ହିଡ଼ିମିଚ

# ୧. ଅଁଳା (PHYLLANTHUS EMBLICA)

ଅଁଳା ବୃକ୍ଷ ମଧ୍ୟମ ଉଚ୍ଚତାର ପ୍ରାୟ ୨୦-୨୫ ଫୁଟ ପର୍ଯ୍ୟନ୍ତ ବଢ଼ିଥାଏ । ପତ୍ର ତେନ୍ତୁଳି ପତ୍ର ପରି, ଫୁଲ ଗୁଡ଼ିକ ଗୁଚ୍ଛ ଗୁଚ୍ଛ ହଳଦିଆ ରଙ୍ଗର । ଏହା ସର୍ବତ୍ର ଦେଖାଯାଇଥାଏ । ଏହାର ଫଳ ଅଁଳା ନାମରେ ପରିଚିତ ଏବଂ ଔଷଧୀୟ ଗୁଣରେ ଭରପୂର ।

ଅଁଳା ଅଳ୍ପ ଅମ୍ଳମଧୁର ମିଶ୍ରିତ କଷାୟରସ, ରସାୟନ, ଶୀତ ବୀର୍ଯ୍ୟ, କେଶବର୍ଦ୍ଧକ, ମସ୍ତିଷ୍କର ଉପାଦାନ କାରକ, ଚକ୍ଷୁର ହିତକର । ସୌନ୍ଦର୍ଯ୍ୟ ବୃଦ୍ଧିକର, ଶୀତଳ ଓ ତୃପ୍ତିପ୍ରଦ ଏବଂ ବାତ, ପିତ୍ତ, ଶ୍ଳେଷ, ମେହ ପ୍ରମେହ, ଦାହ, ତୃଷା ବମନ, ଅମ୍ଳପିତ୍ତ, ରକ୍ତ ଦୋଷ, ଧାତୁ ଦୋଷ ମୂତ୍ରାଶୟ ପୀଡ଼ା, ବ୍ୟଙ୍ଗ, ଅଜୀର୍ଣ୍ଣ, ବାୟୁ, ଶୂଳ ଓ ଅନିଦ୍ରା ପ୍ରଭୃତିର ନିବାରକ ଅଟେ । ଏହାକୁ ପ୍ରୟୋଗ କରି ଚ୍ୟବନ ଋଷି ପୁଣି ଯୌବନ ପ୍ରାପ୍ତ ହୋଇଥିଲେ ଏଣୁ ଏହା ଚ୍ୟବନପ୍ରାଶ୍‌ର ମୁଖ୍ୟ ଧାରକ ।

ଅଁଳା ଫଳର ଆକାର ଛୋଟ ଓ ବରକୋଳି ସଦୃଶ । ଏହା ସାଧାରଣତ ମାଘ ଓ ଫାଲଗୁନ ମାସରେ ସଂଗ୍ରହ କରାଯାଇଥାଏ । ଅଁଳା କୁ ଛାୟାରେ ଶୁଖାଇଲେ ଏଥିରୁ ଭିଟାମିନ 'ସି'ଗୁଣ ଖୁବ କମ୍ ପରିମାଣରେ ନଷ୍ଟ ହୋଇଥାଏ । ଆୟୁର୍ବେଦ ବ୍ୟତିତ ହୋମିଓପ୍ୟାଥି ଓ ୟୁନାନୀ ଚିକିତ୍ସା ପଦ୍ଧତିରେ ଅଁଳାର ଔଷଧୀୟ ଗୁଣକୁ ପ୍ରଶଂସା କରାଯାଇଛି । ଆଦିବାସୀ ମାନେ ଅଂଳାକୁ ସେମାନଙ୍କର ଯେ କୌଣସି ପେଟ ରୋଗ ପାଇଁ ବ୍ୟବହାର କରିଥାନ୍ତି ।

ଅଁଳାର ତାଜା ଫଳରେ ଜଳ ୮୧.୨% ପ୍ରୋଟିନ୍ ୦.୫% ଚର୍ବୀ ୦.୧%, ଖଣିଜ ୦.୭%, ତନ୍ତୁ ୩.୪%, କାର୍ବୋହାଇଡ୍ରେଟ ୧୪.୧% ଓ ଅନେକ ପ୍ରକାରର ଭିଟାମିନ୍ ଥାଏ । ଏଥି ମଧ୍ୟରେ ଭିଟାମିନ 'ସି' ମୁଖ୍ୟତଃ ଅଧିକ ଥାଏ ।

ପୀଡ଼ନ ସଂସ୍ଥାନକୁ ଶକ୍ତିଶାଳୀ କରିବା ଏବଂ ସ୍କର୍ଭି ରୋଗ ନିବାରଣ କରି ସମଗ୍ର ଅନ୍ତଃସଂସ୍ଥାନକୁ ଦୃଢ଼ କରିବା ବ୍ୟତିତ ଏହା ତ୍ରୀଦୋଷହର ହୋଇଥବାରୁ ଏହାର ଅନ୍ୟ ଉପଯୋଗ ମଧ୍ୟ ରହିଛି ।

ପିତ୍ତ ଜନିତ ମୁଣ୍ଡବ୍ୟଥା, ମୂତ୍ରାବରୋଧରେ ଏହାର ଲେପ କରାଯାଏ । ନେତ୍ର ରୋଗରେ ଏହାର ରସ ଆଖିରେ ପକାଯାଏ । ମୁଣ୍ଡରେ ମଇଳା ଏବଂ ଗଲୁ ଦୂରକରିବା ପାଇଁ ଅଁଳାରେ ମୁଣ୍ଡ ଧୋଇବା ପୁରାତନ ଘରୋଇ ପ୍ରୟୋଗ ଅଟେ ।

ଇନ୍ଦ୍ରିୟ ଦୁର୍ବଳତା, ମସ୍ତିଷ୍କ ଦୌର୍ବଲ୍ୟ, ଅର୍ଶ ହୃଦରୋଗ ଜନିତ ରକ୍ତବାନ୍ତି, କାଶ ଶ୍ୱାସ ତଥା ମହିଳାଙ୍କ ପ୍ରମେହ ରୋଗରେ ମଧ୍ୟ ଏହା ଉପଯୋଗୀ ଅଟେ । ଅଁଳା ଏକ ସମଗ୍ର ଔଷଧି ଅଟେ ଏହାର କାର୍ଯ୍ୟ କେବଳ ପାଚନ ସଂସ୍ଥାନ ମଧ୍ୟରେ ସୀମିତ ନୁହେଁ । ତ୍ରୀଫଳା ରୂପେ ଏହାର ପ୍ରୟୋଗ ସହିତ ସମସ୍ତେ ଅବଗତି ଅଟନ୍ତି । କ୍ଷୟ, ଶରୀର ଶୋଥ, ତଥା କୁଷ୍ଠ ଆଦି ରୋଗରେ ବୈଦ୍ୟମାନେ ଏହାର ସଫଳ ପ୍ରୟୋଗ କରନ୍ତି ।

## ୨. ଅର୍ଜୁନ (TERMINALIA ARJUNA)

ଏହା ଏକ ଖୁବ୍ ବଡ଼ ଚିର ସବୁଜ ବୃକ୍ଷ ଅଟେ । ଉଚ୍ଚତା ପ୍ରାୟ ୭୦-୮୦ ଫୁଟରୁ ଅଧିକ ହୋଇଥାଏ । ନଦୀ ଓ ନାଳ କୂଳରେ ହେଉଥିବାରୁ ଏହାକୁ କକୁଭ ତଥା ନଦୀ ସର୍ଜ ବୋଲି କହିଥାନ୍ତି । ବିହାର, ମଧ୍ୟପ୍ରଦେଶ ଓ ହିମାଳୟର ତରାଇ ଅଂଚଳରେ ବିଶେଷ ଭାବେ ଏହି ବୃକ୍ଷ ଦେଖାଯାଇଥାଏ । ଅର୍ଜୁନ ଜାତିର ଗଛ ଅତି କମ୍‌ରେ ପନ୍ଦର ପ୍ରକାର ବୃକ୍ଷ ଭାରତରେ ଦେଖାଯାଏ ।

ବିଶେଷତ ଏହି ଗଛର ଛାଲି କେବଳ ଔଷଧ ରୂପେ ବ୍ୟବହାର ହୋଇଥାଏ । ଏଣୁ କେଉଁ ଅର୍ଜୁନ ଗଛ ଔଷଧ ତାହା ପ୍ରଥମେ ନିରୂପଣ କରିବା ଜରୁରୀ ଅଟେ । କାରଣ ଛାଲି ଏକ ସମାନ ଦେଖାଗଲେ ମଧ୍ୟ ସେଗୁଡ଼ିକର ରାସାୟନିକ ଗୁଣ ଏବଂ ଭେଷଜୀୟ ପ୍ରଭାବ ସଂପୂର୍ଣ୍ଣ ଭିନ୍ନ ହୁଏ ।

ଅସଲି ଅର୍ଜୁନର ଛାଲି ଅନ୍ୟ ଗଛର ଛାଲି ତୁଳନାରେ ଅଧିକ ମୋଟା ତଥା ନରମ ଥାଏ । ତନ୍ତୁ ରହିତ ଏହି ଛାଲିର ଭିତର ରକ୍ତବର୍ଣ୍ଣର ଲାଲ ଥାଏ । ଗଛ ଉପରୁ ଏହି ଛାଲି ଚିକ୍କଣ ଚାଦର ରୂପେ ଛାଡ଼ି ଆସେ କାରଣ ଗଛର କାଣ୍ଡ ବହୁତ ଚୌଡ଼ାଥାଏ ।

ପ୍ରାଚୀନ ଆୟୁବେଦ ଶାସ୍ତ୍ରରେ ଅର୍ଜୁନ ଛାଲିର କ୍ୱାଥକୁ ହୃଦରୋଗର ମହୌଷଧୀ ଭାବେ ସ୍ୱୀକାର କରାଯାଇଛି । ପ୍ରାଚୀନ ଆୟୁର୍ବେଦ ଶାସ୍ତ୍ରୀ ଚକ୍ରଦତ୍ତ କହିଛନ୍ତି ଘିଅ, ଦୁଧ ଅଥବା ଗୁଡ଼ ସହିତ ଯିଏ ଅର୍ଜୁନ ତ୍ୱଚାର ଚୂର୍ଣ୍ଣ ନିୟମିତ ରୂପେ ସେବନ କରେ ତାକୁ ହୃଦୟ ରୋଗ, ଜୀର୍ଣ୍ଣଜ୍ୱର ରକ୍ତପିତ୍ତ କଦାପି ହଇରାଣ କରନ୍ତି ନାହିଁ । ତଥା ସେ ଦୀର୍ଘଜୀବୀ ହୁଏ । ଉଚ୍ଚ ରକ୍ତଚାପ ରୋଗରେ ଅର୍ଜୁନ ଛାଲିର ଚୂର୍ଣ୍ଣ ଅବ୍ୟର୍ଥ ଔଷଧ । ଏହା ମୂତ୍ର ବିରେଚକ ମଧ୍ୟ ଅଟେ ।

ଅର୍ଜୁନ ଛାଲି କଫ ପିତ୍ତ ନାଶକ ଅଟେ । ଏହା ଚୂର୍ଣ୍ଣର ପ୍ରଲେପ ଦ୍ୱାରା

ବାହ୍ୟ ରକ୍ତସ୍ରାବ ବନ୍ଦ ହୁଏ । ବକ୍ଷଦାହ ଏବଂ ଜୀର୍ଣ୍ଣକାସ ଉପଶମ କରେ । ପରିଶ୍ରା ଜଳିବା, ଶ୍ୱେତ ପ୍ରଦର ତଥା ଚର୍ମ ରୋଗରେ ଚୂର୍ଣ୍ଣ ରୂପେ ସେବନ କଲେ ଲାଭ ମିଳେ । ହାଡ଼ଭଙ୍ଗାରେ ଛାଲିର ରସ ଦୁଧ ସହିତ ଦିଆଯାଏ ଫଳରେ ଫୁଲା ଦରଜ କମି ସାଧାରଣ ସ୍ଥିତି ଫେରିଆସେ ।

## ୩. ଅନନ୍ତମୂଳ (HEMIDESMUS INDICUS)

ଏହା ଏକ ଲତିକା ଜାତୀୟ ଗୁଳ୍ମ । ୫ରୁ ୧୫ ଫୁଟ ଲମ୍ବ ହୁଏ । ଭୂଇଁରେ ବ୍ୟାପିଥାଏ । କିମ୍ବା ବୃକ୍ଷକୁ ଆଶ୍ରାକରି ଉପରକୁ ଉଠେ । ଏଥିରୁ କର୍ପୁର ମିଶ୍ରିତ ଚନ୍ଦନ ଗନ୍ଧ ବାହାରେ ଚେ଼ରର ଉପର ଛାଲି ଅଳ୍ପ ଧୂସର ରଙ୍ଗ ଥାଏ । ସ୍ୱାଦ ଟିକିଏ ମଧୁର ଏବଂ ତୀକ୍ଷ୍ଣ । ଚେ଼ରକୁ ତାଜା ଭାଙ୍ଗିଲେ ଦୁଧ ବାହାରେ । ଛାଲି ଶୁଖିଗଲେ ଫଟା ରେଖାଯୁକ୍ତ ଦେଖାଯାଏ । ଛାଲିର ତଳଭାଗ ଟିକିଏ ହଳଦିଆ ରଙ୍ଗର ଏବଂ ଅତିଶକ୍ତ ଥାଏ ।

ଏହାର ଚେର ଚେରର ଛାଲିର ଚୂର୍ଣ୍ଣ କିମ୍ବା ତାହା ରସ ଔଷଧ ରୂପେ ବ୍ୟବହାର କରାଯାଏ । ଏଥିରେ ଥିବା ତେଲ ଶୀଘ୍ର ଉଡ଼ିଯାଏ ତେଣୁ ଏହାର ଚେ଼ରର କ୍ୱାଥ ତିଆରି କରାଯାଏନାହିଁ । ପାଶ୍ଚାତ୍ୟ ଚିକିତ୍ସା ବିଜ୍ଞାନରେ ମଧ ଅନନ୍ତ ମୂଳକୁ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଦିଆଯାଇଛି । ହୋମିଓପ୍ୟାଥି ଓ ୟୁନାନୀରେ ମଧ ଏହାର ବ୍ୟବହାର ଉପରେ ଗୁରୁତ୍ୱ ଦିଆଯାଇଛି ।

ଏହା ସ୍ୱେଦ ଜନକ ତଥା ମୂତ୍ର କାରକ ଅଟେ । ଏଥିପାଇଁ ଏହା କୁପୋଷଣ ଜନିତ ଶୋଥଫୁଲା, ପୁରାତନ ଗଣ୍ଠିବାତ, ପରିସ୍ରାରୋଗ, କୁଷ୍ଠ ଏବଂ ଚର୍ମ ରୋଗରେ ଉପଯୋଗୀ ଅଟେ ।

## ୪. ଅପମାର୍ଗ (ACHYRANTHES ASPERA)

ଏହା ଏକ ପ୍ରକାର ଗୁଳ୍ମ ଜାତୀୟ ଉଦ୍ଭିଦ । ସାଧାରଣ ଉଚ୍ଚତା ଦେଢ଼ଫୁଟ କିମ୍ବା ଦୁଇଫୁଟ । ଏହା ବର୍ଣ୍ଣ ଭେଦରେ ଦୁଇପ୍ରକାର, ଯଥା- ଶ୍ୱେତ ଓ ରକ୍ତ । ଏହି ଦୁଇ ପ୍ରକାରର ଅପମାର୍ଗ ଅତ୍ୟନ୍ତ ଉପକାରୀ ଅଟେ । ଶ୍ୱେତ ଅପମାର୍ଗର ସମସ୍ତ ଅଂଶ ଧଳା ଦେଖାଯାଉଥିବାବେଳେ ରକ୍ତ ଅପମାର୍ଗର ସମସ୍ତ ଅଂଶ ନାଲି ଦେଖାଯାଏ ।

ଅପମାର୍ଗ ଅଳ୍ପ କଟୁ ମିଶ୍ରିତ ତିକ୍ତରସ । ପାଚକ, ଅଗ୍ନିବର୍ଦ୍ଧକ, ମଳ ରୋଧକ,

ରୁଚିକାରକ, ଅର୍ଶ, ମେଦବୃଦ୍ଧି, ବିଷଦୋଷ, ବ୍ରଣ କ୍ଷତ, ବାର୍ଦ୍ଧକ୍ୟ, ଅତିସାର, ହୃଦରୋଗ, ବସନ୍ତ କଣ୍ଠୁ ଓ କୃମି ନିବାରକ ଅଟେ ।

- ଅପମାର୍ଗ ପତ୍ର ରସରେ ଲୁଣ ମିଶାଇ ଯେ କୌଣସି ପ୍ରକାର ଯାଦୁରେ ଲଗାଇଲେ ତାହା ଭଲ ହୋଇଯାଏ ।
- ପତ୍ରର ରସକୁ କଟା ସ୍ଥାନରେ ଲଗାଇଲେ ସେ ସ୍ଥାନର ଦରଜ ନିବାରିତ ହୁଏ ଓ କଟା ସ୍ଥାନ ଯୋଡ଼ି ହୋଇ ଲୁଚିଯାଏ ।
- ପତ୍ରର ରସ ଓ ଗୋଲମରିଚ଼ ଗୁଣ୍ଡ ମିଶାଇ ବାଟି ସେବନ କଲେ ଜ୍ୱର ଆରୋଗ୍ୟ ହୁଏ ।
- ପତ୍ରର ରସ କିମ୍ବା ଗଛ ଦ୍ୱାରା ଦାନ୍ତ ଘସିଲେ ସମସ୍ତ ପ୍ରକାର ଦନ୍ତରୋଗ ନିବାରିତ ହୁଏ ।
- ଅପମାର୍ଗ ଗଛକୁ ପୋଡ଼ି ଭସ୍ମକରି ଭସ୍ମକୁ ତେଲରେ ମିଶାଇ ଗରମ କରି କାନରେ ପକାଇଲେ ସମସ୍ତ ପ୍ରକାର କର୍ଣ୍ଣରୋଗ ଭଲ ହୁଏ ।
- ଏହାର ପତ୍ରକୁ ପିକା କରି ଧୂଆଁ ଖାଇଲେ ସମସ୍ତ ପ୍ରକାର କାର୍ଶ ରୋଗ ଉପଶମ ହୋଇଥାଏ ।

## ୫. ଅପରାଜିତା (CLITORIA TERNETIA)

ଏହା ଏକ ଲତା ଜାତୀୟ ଉଦ୍ଭିଦ । ଶ୍ୱେତ ଓ ନୀଳ ଦୁଇ ପ୍ରକାରର ଦେଖାଯାଏ । ଫୁଲର ରଙ୍ଗରୁ ଏହା ପ୍ରକାର ଭେଦ ନିର୍ଣ୍ଣୟ କରି ହୁଏ । ପତ୍ର ସଜନା ପତ୍ର ପରି । ଏହାର ଫଳ କୋଳଥ ଛୁଇଁ ପରି । ଏହା ମଧ୍ୟ କାନକଟା ଗଛ ନାମରେ ପରିଚ଼ିତ । ଏହା ସାମାନ୍ୟ ବିଷାକ୍ତ ଅଟେ ।

ଅପରାଜିତା କଟୁକଷାୟ ଓ ତିକ୍ତରସ, କଣ୍ଠ ଶୋଧକ, ଶୀତ ବୀର୍ଯ୍ୟ, ମେଧା ଜନକ, ବୁଦ୍ଧିକର, ସ୍ମରଣଶକ୍ତି ବର୍ଦ୍ଧକ, ସ୍ୱର ମାର୍ଜିତକାରକ, ଚ଼କ୍ଷୁର ହୀତ କର, ଜ୍ୱର, କାସ, ତ୍ରୀଦୋଷ, ମୁତ୍ର ଦୋଷ, ଶୂଳ, ଆମଦୋଷ, ବ୍ରଣ, ଶୋଥ, ବିଷ ଦୋଷ, କୁଷ୍ଠରୋଗ ପ୍ରଭୃତିର ବିନାଶକ ଅଟେ ।

- କୃଷ୍ଣ ଅପରାଜିତା ମୂଳକୁ ଜଳରେ ବାଟି ସେଥିରେ ମହୁ ମିଶାଇ ପ୍ରତ୍ୟେହ ସେବନ କରିଲେ ସମସ୍ତ ପ୍ରକାର ଶୂଳ ନିବାରିତ ହୁଏ । ଧଳା ଅପରାଜିତା ମୂଳ ଫଳ, ଫୁଲ ଓ ଲତାକୁ ଏକତ୍ର ପୋଡ଼ି ପାଉଁଶ କରି

ପାଉଁଶକୁ ଗାଇ ଲହୁଣି ସହିତ ଏକମାସ ପର୍ଯ୍ୟନ୍ତ ସେବନ କଲେ ସମସ୍ତ ପ୍ରକାର ମୁଖ ବ୍ରଣ ନିବାରିତ ହୁଏ ।

- କୃଷ୍ଣ ଅପରାଜିତା ମୂଳକୁ ଜଳ ସହିତ ବାଟି ସେବନ କରାଇଲେ ସର୍ପ ଓ ଅନ୍ୟାନ୍ୟ ବିଷାକ୍ତ ଜନ୍ତୁଙ୍କ ବିଷ ବିନିଷ୍ଟ ହୁଏ ।
- ଅପରାଜିତାର ତାନ୍ତ୍ରୀକ ପ୍ରୟୋଗ ମଧ କରାଯାଇଥାଏ । ଯେ କୌଣସି ଅପରାଜିତା ମୂଳକୁ ଆଣି ପ୍ରସବ ଯନ୍ତ୍ରଣା ଅନୁଭବ କରୁଥିବା ସ୍ତ୍ରୀର କଟିରେ ଧାରଣ କରାଇଲେ ସେ ସ୍ତ୍ରୀର ସଙ୍ଗେ ସଙ୍ଗେ ପ୍ରସବ ହୁଏ ।
- ସର୍ପ ଗର୍ତ୍ତରେ ଏହାର ଚେ଼ର ରଖିଲେ ସର୍ପ ସେଠାରୁ ଦୂରକୁ ପଳାଇ ଯାଏ ।

## ୬. ଅଶୋକ (SARACA INDICA)

ଏହା ଆମ ଦେଶର ଏକ ବିରଳ ବୃକ୍ଷ । ସବୁ ସ୍ଥାନରେ ଦୃଷ୍ଟି ଗୋଚ଼ର ହୁଏ ନାହିଁ । ଏହା ଏକ ଚ଼ିର ସବୁଜ ବୃକ୍ଷ ୨୫-୩୦ଫୁଟ ପର୍ଯ୍ୟନ୍ତ ଉଚ୍ଚା । ଆମ୍ବପରି ବହୁ ଶାଖାଯୁକ୍ତ ଏବଂ ଗହଳ । ଏହି ବୃକ୍ଷ ତଳେ ଉପବିଷ୍ଟ ହେଲେ ନାନାଦି ଶୋକ ଦୂର ହୁଏ ବୋଲି ଶାସ୍ତ୍ରରେ ବର୍ଣ୍ଣିତ ଅଛି । ଏହା ସ୍ତ୍ରୀ ରୋଗର ଦିବ୍ୟ ଔଷଧି ଏବଂ ବନ୍ଧ୍ୟାତ୍ୱ ହରଣକାରୀ । ଏହି ବୃକ୍ଷର ଛାଲି ଓ ଫୁଲ ଔଷଧ ରୂପେ ବ୍ୟବହାର ହୋଇଥାଏ ।

ଅସଲି ଅଶୋକର ଛାଲି ବାହାରେ ଶୁଭ୍ର ଧୂସର, ସ୍ପର୍ଶକଲେ ଖଦଡ଼ିଆ, ଭିତରେ ରକ୍ତବର୍ଣ୍ଣର ଥାଏ । ସ୍ୱାଦରେ ଏହା ତିକ୍ତ ଥାଏ । ଔଷଧ ପ୍ରସ୍ତୁତ କରିବା ପାଇଁ ଅଶୋକ ବୃକ୍ଷର କାଣ୍ଡର ଛାଲି ପୌଷ ମାଘ ମାସରେ ଏକତ୍ର କରି ତାକୁ ଶୁଷ୍କ ଅନାର୍ଦ୍ଦ ବାୟୁରେ ସୁରକ୍ଷିତ ରଖାଯାଏ । ପୁଷ୍ପକୁ ବର୍ଷାରେ ତଥା ଫଳ କଢ଼କୁ ଶରତ ପୂର୍ବରୁ ସଂଗ୍ରହ କରାଯାଏ । ୬ ମାସରୁ ଏକ ବର୍ଷ ପର୍ଯ୍ୟନ୍ତ ଶୁଷ୍କ ଅଙ୍ଗର ଚୂର୍ଣ୍ଣକୁ ପ୍ରଯୁକ୍ତ କରାଯାଏ ।

ଅଶୋକ ତିକ୍ତରସ ମିଶ୍ରୀତ, କଷାୟରସ, ମଳରୋଧକ, ଶୀତ ଓ ଉଷ୍ଣବୀର୍ଯ୍ୟ, ବଳକାରକ, ବର୍ଣ୍ଣବର୍ଦ୍ଧକ ଓ ରକ୍ତ ଶୁଦ୍ଧକାରକ, ପ୍ରଦର ରୋଗ ନିବାରକ, ଯୋନିରୋଗ, ଜ୍ୱର, ଦାହ, ତୃଷ୍ଣା, ଶୂଳ,କୃମି, ଉଦର ରୋଗ, ଶୋଥ, ଅଜୀର୍ଣ୍ଣ, ବାୟୁ ବିକୃତି, ବିଷ ଦୋଷ ହରଣକାରୀ । ପ୍ଲୀହା ଓ ଗୁଳ୍ମ ନାଶକାରୀ ଅଟେ ।

ଅଶୋକର ଛାଲିରେ ଅନେକ ଜୈବ ସକ୍ରୀୟ ପଦାର୍ଥ ଅଛି ଏହାହିଁ ଏହାର ପ୍ରଜନନ ସଂସ୍ଥାନ ଉପରେ ପ୍ରଭାବ ଶାଳୀ ହେବାର ମୂଳ କାରଣ ଅଟେ । ଶ୍ୱେତ ପ୍ରଦରରେ ଅଶୋକ ତ୍ୱକ୍ ଚୂର୍ଣ୍ଣ ଏବଂ ମିଶ୍ରୀ ସମଭାଗରେ ଗାଇ ଦୁଧ ସହିତ ପ୍ରାତଃ-ସାୟଂ ସେବନ କରାଯାଏ । ବନ୍ଧ୍ୟାତ୍ୱ ଦୂରୀକରଣ ପାଇଁ ଅଶୋକ ଛାଲିର କ୍ୱାଥ (ଅଶୋକାରିଷ୍ଟ) ନିୟମିତ ସେବନ ଆବଶ୍ୟକ ।

ନାଡ଼ୀ ସଂସ୍ଥାନ ସମ୍ବନ୍ଧୀୟ ସମସ୍ତ ବେଦନା ପ୍ରଧାନ ରୋଗରେ ଏହାର ଲେପ ଏବଂ ମୁଖ ମାର୍ଗରେ ପ୍ରୟୋଗର ବିଧାନ ଅଛି । ଏହାକୁ ଅତିସାର, ରକ୍ତ ବିକାରରେ ତଥା ଉଚ୍ଚଜ୍ୱରକୁ ଶିଘ୍ର ତଳକୁ ଖସାଇବା ପାଇଁ ପ୍ରୟୋଗ କରାଯାଏ ।

## ୭. ଅଶ୍ୱଗନ୍ଧା (WITHANIA SOMNIFERA)

ଏହା ଏକ ଛୋଟ ଗଛ ସାଧାରଣତଃ ୪ଫୁଟ ପର୍ଯ୍ୟନ୍ତ ଉଚ୍ଚ ଓ ଶାଖାଯୁକ୍ତ ହୋଇଥାଏ । ଶାଖାସବୁ ଗୋଲାକାର ଓ ଚାରିଆଡ଼କୁ ବ୍ୟାପିଥାଏ । ଏହା କୌଣସି ସ୍ଥାନରେ ବଡ଼ବଡ଼ ବୃକ୍ଷ ତଳେ, ଜଳାଶୟ ନିକଟରେ ବର୍ଷତମାମ ସବୁଜ ସ୍ଥିତିରେ ରହେ । ଏହାର ପତ୍ର ପଳାସ ପତ୍ରପରି ୫-୧୦ ସେ.ମି ଲମ୍ବ ଓ ୨-୫ ସେ.ମି. ଚୌଡ଼ା ଥାଏ । ବୃନ୍ତ ବହୁତ ଛୋଟ ଥାଏ । ପୁଷ୍ପ ଛୋଟ ଗୁଚ୍ଛା, ଲମ୍ବ, ହଳଦିଆ-ସବୁଜ ରଙ୍ଗର-ଶାଖାର ଅଗ୍ରଭାଗରେ ଫୁଟେ । ଏହା ଉପରେ ମଧ ବୃନ୍ତପରି ସଫେଦ ଛୋଟ ଛୋଟ ରୁମ ଥାଏ । ଫଳ ଛୋଟ ମଟର ଅଥବା ମକା ମଞ୍ଜିପରି ପ୍ରଥମେ ସବୁଜ ଓ ପାଚିଲାପରେ ଲାଲ ରଙ୍ଗ ହୁଏ । ଏହି ଫଳକୁ ଦୁଧରେ ପକାଇଲେ ଦୁଧକୁ ବସାଇ ଦିଏ । ଓଦା ତାଜା ଚେରରେ ଘୋଡ଼ା ମୂତ୍ର ପରି ତୀବ୍ର ଗନ୍ଧ ଆସେ ।

ଅଶ୍ୱଗନ୍ଧା ସାରା ଭାରତରେ, ପଶ୍ଚିମାଂଚଳରେ, ମଧ୍ୟପ୍ରଦେଶରେ ମହାରାଷ୍ଟ୍ର, ଗୁଜୁରାଟ, ପଞ୍ଜାବ, ତଥା ହିମାଳୟ ଅଂଚଳରେ ବ୍ୟାପକ ହୋଇଥାଏ । ଏହାକୁ ବ୍ୟବସାୟୀକ ଭିତ୍ତିରେ ଚାଷ କରାଯାଉଛି ।

ଅଶ୍ୱଗନ୍ଧା ଦୁଇ ପ୍ରକାରର ଥାଏ । ଛୋଟ ତଥା ବଡ଼ । ଛୋଟ ଅଶ୍ୱଗନ୍ଧା ଗଛ ଛୋଟ କିନ୍ତୁ ମୂଳ ବଡ଼ ହୁଏ । ପୂର୍ବରେ ନାଗୋରୀ ଅଶ୍ୱଗନ୍ଧାକୁ ଦେଶୀ ମଧ କହନ୍ତି । ଗଛ ବଡ଼ ଓ ଚେର ଛୋଟ ପତଳା ଥାଏ । ବଜାରରେ ଅଶ୍ୱଗନ୍ଧା ଜାତିର ଅନ୍ୟ ଏକ ପ୍ରକାର ଚେର ଅପମିଶ୍ରଣ ହୁଏ । କେହି କେହି ଅସଗନ୍ଧାକୁ ଅଶ୍ୱଗନ୍ଧା

ଭାବରେ ଗ୍ରହଣ କରିଥାନ୍ତି । କିନ୍ତୁ ଏହା ବିଷାକ୍ତ ଅଟେ । ଏହା ପ୍ରୟୋଗରେ ଉପକାର ବଦଳରେ ଅପକାର ମିଳେ । ଅଶ୍ୱଗନ୍ଧାର ଚେରକୁ ବାଛି ଶୁଖାଇ ଏୟାରଟାଇଟ ଶୁଷ୍କ ଶୀତଳ ସ୍ଥାନରେ ରଖାଯାଏ । ସେଗୁଡ଼ିକ ଏକବର୍ଷ ପର୍ଯ୍ୟନ୍ତ ବ୍ୟବହାର କରାଯାଇପାରେ ।

ଅଶ୍ୱଗନ୍ଧା ଏକ ବଳ ବର୍ଦ୍ଧକ ରସାୟନ ଅଟେ । ପୁରାତନରୁ ଆଜି ପର୍ଯ୍ୟନ୍ତ ସମସ୍ତ ଚିକିତ୍ସକ ଏହାର ଏହିଗୁଣର ପ୍ରଶଂସା କରିଛନ୍ତି । ଚକ୍ରଦତ୍ତଙ୍କ ଅନୁସାରେ ଯଦି ଅଶ୍ୱଗନ୍ଧା ଚୂର୍ଣ୍ଣ ୧୫ ଦିନ ଦୁଧ, ଘୃତ ତେଲ ଅଥବା ଜଳରେ ସେବନ କଲେ ବାଳକର ଶରୀର ପୁଷ୍ଟହୁଏ । ଶିଶିର ଋତୁରେ ଯଦି କୌଣସି ବୃଦ୍ଧ ଏହାକୁ ଏକମାସ ସେବନ କରେ ସେ ଯୁବା ପରି ହୋଇଯାଏ ।

## ୮. ଅଶ୍ୱତ୍ଥ (FICUS RELIGIOSA)

ବରଗଛ ସଦୃଶ ଏହା ଏକ ଖୁବ୍ ବଡ଼ ବୃକ୍ଷ । ଅଳ୍ପ ପବନରେ ଏହି ଗଛର ପତ୍ର ସବୁ କମ୍ପିଲା ପରି ଶବ୍ଦ ହୁଏ । ଏହା ପ୍ରାୟ ସର୍ବତ୍ର ଦେଖାଯାଏ । ଏହି ଗଛ ସବୁଠାରୁ ଅଧିକ ଅମ୍ଳଜାନ ବାୟୁ ମଣ୍ଡଳକୁ ଛାଡ଼ିଥାଏ । ଏଣୁ ଏହାକୁ ବିଷ୍ଣୁବୃକ୍ଷ କୁହାଯାଏ କାରଣ ବିଷ୍ଣୁ ହେଉଛନ୍ତି ସୃଷ୍ଟିର ପାଳନ କର୍ତ୍ତା ଏବଂ ଏହି ବୃକ୍ଷ ଅମ୍ଳଜାନ ଦେଇ ଜୀବଜଗତକୁ ପାଳନ କରିଥାଏ । ଅଶ୍ୱତ୍ଥ କଷାୟ ରସ, ଗୁରୁପାକ, ପିତ୍ତଘ୍ନ, ଶୀତ ବୀର୍ଯ୍ୟ ବର୍ଣ୍ଣକାରକ, ଓ କାନ୍ତି ଜନକ, କଫ, ବ୍ରଣ, କ୍ଷତ, ରକ୍ତ ବିକୃତି, ଗଳକ୍ଷତ, ମୁଖକ୍ଷତ, ଦନ୍ତପିଡ଼ା, ଯୋନିରୋଗ, ଓ ପ୍ରମେହ ଆଦି ରୋଗ ନିବାରକ ଅଟେ । ଏହାର ପତ୍ର, ଛେଲି, ଓ ଫଳ ଔଷଧ ରୂପେ ବ୍ୟବହାର ହୋଇଥାଏ ।

- ଏହାର ଛାଲିକୁ ସିଝାଇ ସେହି ଜଳରେ ଧୌତ କରିଲେ ପ୍ରମେହ, ଉପଦଂଶ, ଗରମୀ, ବ୍ରଣ, କ୍ଷତ ଓ ନାନାଦି ଯୋନି ରୋଗ ଆରୋଗ୍ୟ ହୁଏ । ଦନ୍ତମୂଳ କ୍ଷତ ମଧ୍ୟ ଭଲ ହୁଏ ।
- ଅଶ୍ୱତ୍ଥ ଗଛର ପାଚିଲା ଫଳ କିମ୍ବା ଛାଲିକୁ ଜଳ ସଙ୍ଗରେ ବାଟି ଅଫିମ ସେବନ କରୁଥିବା ବ୍ୟକ୍ତିର ଉପସର୍ଗରେ ଉପକାର ହୋଇଥାଏ ।
- ଏହାର ଛାଲିକୁ ଜଳରେ ସିଝାଇ ସେଥିରେ ସ୍ନାନ କରିଲେ ଦେହର କାନ୍ତି ବର୍ଦ୍ଧନ ହୁଏ ।

- ଏହାର କୋମଳ ପତ୍ରକୁ ଛେଚି ତାର ରସ ସହିତ କର୍ପୂର ଚୂର୍ଣ୍ଣ ମିଶାଇ ଲଗାଇଲେ ପ୍ରମେହ ଆଦି ରୋଗ ଉପଶମ ହୁଏ ଓ ଯୋନିକ୍ଷତ ଓ ଭଗନ୍ଦର ଅଳ୍ପ ଦିନରେ ଆରୋଗ୍ୟ ହୁଏ ।
- ଏହାର ପତ୍ରକୁ ଶୁଖାଇ ଚୂର୍ଣ୍ଣକରି ତାକୁ ଯେକୌଣସି କ୍ଷତରେ ପକାଇଲେ କ୍ଷତ ଅଳ୍ପ ଦିନରେ ଶୁଖିଯାଏ ।

## ୯. କରଞ୍ଜ (PONGAMIA PINNETA)

ଏହି ବୃକ୍ଷ ମଧ୍ୟ ଭାରତରେ ସର୍ବତ୍ର ଦେଖାଯାଇଥାଏ । ଏହା ନିମ୍ବପରି ଏକ ବୃହଦକାର ବୃକ୍ଷ ଏବଂ ଚିର ସବୁଜ ଅଟେ । ଏହାର ବିଶେଷତ୍ୱ ହେଲା ଏହା କଟୁ ତିକ୍ତ ରସ ଗୁଣ ବିଶିଷ୍ଟ ଅଟେ । ଏହାର ଛେଲି ଏବଂ ଫଳରୁ ବାହାରୁଥିବା ତେଲ ବିଭିନ୍ନ ପ୍ରକାରର 'ଘା' ଏବଂ ଏକଜିମା ପାଇଁ ଅବ୍ୟର୍ଥ ଔଷଧ ରୂପେ କାମ କରିଥାଏ । ଆଦିବାସୀ ମାନେ ଜଙ୍ଗଲରେ ଖାଦ୍ୟ ଅନ୍ୱେଷଣରେ ଭ୍ରମଣ କରୁଥିବା ସମୟରେ ସର୍ବାଙ୍ଗ ଏହି କରଞ୍ଜ ତେଲର ପ୍ରଲେପ ଦେଇଥାନ୍ତି । କାରଣ ଏହା ସେମାନଙ୍କୁ ବନ୍ୟ କୀଟ ପତଙ୍ଗ ମାନଙ୍କ ଦଂଶନରୁ ରକ୍ଷା କରିଥାଏ । କରଞ୍ଜ ଦାନ୍ତକାଠିରେ ସର୍ବଦା ଦାନ୍ତ ଘସିବା ଦ୍ୱାରା ଦାନ୍ତମୂଳ ଶକ୍ତ ଓ ନିରୋଗ ରହିଥାଏ । ସଦା ସର୍ବଦା କୃଷିକ୍ଷେତ୍ର ଓ ପାଣିରେ କାର୍ଯ୍ୟକରୁଥିବା ଶ୍ରମିକ ମାନେ କରଞ୍ଜତେଲ ଲଗାଇବା ଦ୍ୱାରା ପାଣିଖିଆ ରୋଗ ହୁଏ ନାହିଁ । କରଞ୍ଜତେଲର ବ୍ୟବହାର ଆଦିବାସୀ ମାନେ ବହୁଳ ଭାବେ କରିଥାନ୍ତି ।

## ୧୦. କାଠଚମ୍ପା (PLUMERIA ACUTIFOLIA)

ଏହା ଏକ ବଡ଼ ବୃକ୍ଷ କିନ୍ତୁ ଚମ୍ପାଗଛ ପରି ଏତେ ବଡ଼ ନୁହେଁ । ପତ୍ର ଓଉ ପତ୍ରପରି ଲମ୍ୱ । ଫଳ ନଥାଏ କେବଳ ଫୁଲ ଫୁଟେ ଓ ଝଡ଼ିପଡ଼େ । ଏହି ଗଛ ଦୁଇ ପ୍ରକାର ଯଥା- ଧଳା ଓ ଲାଲ, ଫୁଲରୁ ଜାତି ନିର୍ଣ୍ଣୟ କରାଯାଏ କିନ୍ତୁ ଗୁଣରେ ଏହା ଏକ ।

ଏହା ତିକ୍ତ କଟୁ କଷାୟ ରସ । ଚକ୍ଷୁର ହିତକର ଏବଂ କୁଷ୍ଠ ବାଗୀ ଓ ବ୍ରଣ ଆଦିର ବିନାଶକ ଅଟେ । ଏହା ଔଷଧି ରୂପେ ସେବନ କରା ନଯାଇ କେବଳ ବାହ୍ୟ ବ୍ୟବହାର କରାଯାଇଥାଏ ।

- ବାଗୀ କିମ୍ବା କାଖ ଗୋଲିରେ କାଠଚମ୍ପାର କ୍ଷୀର ବୋଳିଲେ ବାଗୀ ବସିଯାଏ ।
- ଏହାର କ୍ଷୀରରେ ଖଣ୍ଡେ କନା ବୁଡ଼ାଇ ଶୁଖାଇ ସେ କନାକୁ ପୋଡ଼ି ପାଉଁଶ କରି ସେ ପାଉଁସକୁ ସୋରିଷ ତେଲରେ ମିଶାଇ ଗରମ କରି ଲଗାଇଲେ ସମସ୍ତ ପ୍ରକାର ବ୍ରଣ, କ୍ଷତ, ବଇଥି ଓ ଯାବତୀୟ ଚର୍ମରୋଗ ଆରୋଗ୍ୟ ହୁଏ ।
- ଏହାର ଛାଲିକୁ ଜଳ ସହିତ ବାଟି ଉଷୁମକରି ବ୍ରଣ ଉପରେ ଲେପ ଦେଲେ ସେ ବ୍ରଣ ପାଚି ଫାଟିଯାଏ ।
- ଏହାର କ୍ଷୀରରେ ଅଳ୍ପ ଲୁଣ ମିଶାଇ ଯାଦୁରେ ଲଗାଇଲେ ତାହା ବିନାଶ ହୁଏ ।
- ଏହାର କ୍ଷୀରରେ ଚୂଣ ମିସାଇ ଖଲି କ୍ଷତରେ ଲଗାଇଲେ ସେ କ୍ଷତ ଶୁଷ ହୋଇଯାଏ ।

## ୧୧. ଗୁଳୁଚି (TINOSPORA CORDIFOLIA)

ଏହା ଏକ ଆରୋହିଣୀ ଲତା ଅଟେ । ଏହା ପ୍ରାୟ ଚାରିଆଡ଼େ ମିଳିଥାଏ । ଆୟୁର୍ବେଦରେ ଏହାକୁ ଜ୍ୱରର ଏକ ମହାନ ଔଷଧି କୁହାଯାଇଛି । ଏହି ଲତା ଖେତ ହୀଡ଼, ପାହାଡ଼ର ଚଟାଣ ଆଦି ସ୍ଥାନରେ ସାଧାରଣତଃ କୁଣ୍ଡଳାକାର ହୋଇ ବଢ଼ିଥିବାର ଦେଖାଯାଏ । ନିମ୍ବ, ଆମ୍ବ ବୃକ୍ଷ ଦେହରେ ମଧ ବଢ଼ିଥାଏ । ଯେଉଁ ବୃକ୍ଷକୁ ଏହା ଆପଣାର ଆଧାର କରେ ସେହି ବୃକ୍ଷର ଗୁଣକୁ ଗ୍ରହଣ କରିଥାଏ । ଏଣୁ ନିମ୍ବ ଗଛରେ ବଢ଼ିଥିବା ଗୁଳୁଚି ବିଶେଷ ଉପକାରୀ ଓ ଶ୍ରେଷ୍ଠ ଔଷଧ ଅଟେ । ଏହାର କାଣ୍ଡ ଓ ପତ୍ର ଔଷଧ ରୂପେ ପ୍ରଯୁକ୍ତ ହୋଇଥାଏ ।

ଏହା ବାତ ହର, ତ୍ରୀ ଦୋଷ ହର, ରକ୍ତ ଶୋଧକ, ପ୍ରତି ସଂକ୍ରାମକ, ଜ୍ୱରଘ୍ନ ବୋଲି ବୈଦ୍ୟମାନେ ଆଖ୍ୟା ଦେଇଛନ୍ତି । ଏହା ଦାହ, ତୃଷା, ଅମ୍ଳ, ପିତ୍ତ, ପ୍ରମେହ, ପାଣ୍ଡୁ ଆଦି ରୋଗର ନାଶନ କରେ । ଜ୍ୱର, କୁଷ୍ଠ ଏବଂ ଶ୍ଲୀପଦ ପ୍ରମେଦ ଓ ମଧୁମେହର ଶ୍ରେଷ୍ଠ ଔଷଧି ଅଟେ । ଯକୃତ ବିକାର, ହୃଦୟ ଦୁର୍ବଳତା, ନିମ୍ନ ରକ୍ତଚାପ ଓ ଶୁକ୍ରହୀନତା, ଦୌର୍ବଲ୍ୟରେ ବ୍ୟବହାର କରାଯାଏ । ଏହା ଶୁକ୍ରାଣୁ ତିଆରିରେ ସାହାଯ୍ୟ କରେ ।

## ୧୨. ଗଙ୍ଗଶିଉଳି (NEXETHENS ARBORTRISTRIS)

ଏହା ଏକ ମଧ୍ୟମ ଧରଣର ଗଛ ପ୍ରାୟ ସବୁ ସ୍ଥାନରେ ଦୃଷ୍ଟି ଗୋଚର ହୁଏ । ଏହାର ପତ୍ର ଚିରସବୁଜ ଏବଂ ସାମାନ୍ୟ ଲମ୍ବା ଅଟେ । ପୁଷ୍ପ କ୍ଷୁଦ୍ରହେଲେ ମଧ୍ୟ ସୁବାସିତ, ରାତ୍ରୀରେ ଫୁଟି ସକାଳୁ ତାହା ଝଡ଼ି ପଡ଼େ କିନ୍ତୁ ତାର ବାସନା ଜନ ମାନସକୁ ଚମକାଇ ଦିଏ । ଏହାର ଔଷଧୀୟ ଗୁଣ ଆୟୁର୍ବେଦ ବିଜ୍ଞାନରେ ବହୁ ପରିକ୍ଷୀତ । ଏହାର ପତ୍ର ସାଧାରଣଓ ଔଷଧୀୟରୂପେ ପ୍ରଯୁକ୍ତ ହୋଇଥାଏ ।

ପତ୍ରର ରସ ତିକ୍ତ ରସ ଯୁକ୍ତ । ମ୍ୟାଲେରିଆର ଅମୋଘ ଔଷଧୀ । ଏକ ଚାମଚ଼ ଗଙ୍ଗଶିଉଳି ପତ୍ରର ରସ ଗୋଟିଏ ସପ୍ତାହ ନିୟମିତ ସେବନ କଲେ । ମଣିଷ ରକ୍ତରୁ ମ୍ୟାଲେରିଆ ପାରାସାଇଟ୍ ସବୁଦିନ ପାଇଁ ଲୋପ ପାଇଯାନ୍ତି । ଏବଂ କେବେ ଆଉ ମ୍ୟାଲେରିଆ ହୁଏ ନାହିଁ । ଏଣୁ ଆଦିବାସୀ ଅଂଚଳ ମାନଙ୍କରେ ଏହା ପତ୍ରର ରସ ମ୍ୟାଲେରିଆ ପାଇଁ ସେବନ କରାଯାଇ ଥାଏ ଏବଂ ଉପକାର ମଧ୍ୟ ମିଳେ ।

## ୧୩. ଘିକୁଆଁରୀ (ALOE VERA)

ଏହା ଏକ କିଆଁ କେତକୀ ସଦୃଶ ଉଦ୍ଭିଦ । ଘିଅପରି ଚିକ୍କଣ ପୀତ ମଜ୍ଜା ହୋଇଥିବାରୁ ଏହାକୁ ଘୃତକୁମାରୀ ଅଥବା ଘିକୁଆଁରୀ କହନ୍ତି । ଏହା ବହୁବର୍ଷୀୟ ୩୦ରୁ ୬୦ ସେ.ମି ଉଚ୍ଚତା ହୁଏ । ପତ୍ର ମାଂସଳ, ୧ ଫୁଟରୁ ୨ ଫୁଟ ପର୍ଯ୍ୟନ୍ତ ଲମ୍ବା, ୩ ରୁ ୪ ଇଞ୍ଚ ଚ଼ଉଡ଼ା ଅଗ୍ରଭାଗ ମୁନିଆ ହୋଇଥାଏ । ପତ୍ରର ଚ଼ଉଡ଼ା ଭାଗର ଦୁଇପାଖ ମୋଡ଼ି ହୋଇଥାଏ । ଓ କଣ୍ଟା ଥାଏ । ଏହି ଗଛ ପୁରାତନ ହେଲେ ଏଥିରୁ ଏକ ମୃଷଳ ବାହାରେ ଏବଂ ରକ୍ତବର୍ଣ୍ଣର ପୁଷ୍ପ ହୁଏ । ଫଳ ମଧ୍ୟ ଶୀତ ଋତୁରେ ହୋଇଥାଏ । ଏହାର ପତ୍ର ମଧ୍ୟରେ ଥିବା ଶସ୍ ଔଷଧ ରୂପେ କାର୍ଯ୍ୟକରେ ।

ଆୟୁର୍ବେଦ ଶାସ୍ତ୍ରରେ ଏହା ଲେପ ଦେବା ପାଇଁ ଉତ୍ତମ ବସ୍ତୁ ଅଟେ । ଫୁଲା ଦାହ ତଥା ଅର୍ଦ୍ଧ ପକ୍ୱ ବ୍ରଣରେ ଅତ୍ୟଧିକ ଲାଭ ଦାୟକ ହୁଏ । ୟୁନାନୀ ଔଷଧି ବିଜ୍ଞାନରେ ମଧ୍ୟ ଏହାର ପ୍ରୟୋଗ ଦେଖାଯାଏ । ଏହା ଘା କୁ ଆରୋଗ୍ୟ କରି ପୂରଣ କରିବାରେ ସାହାଯ୍ୟ କରେ । ଜଳିଥିବା ସ୍ଥାନ, ତ୍ୱଚାରୋଗ, ଜୀର୍ଣ୍ଣ, ବ୍ରଣ,

ଅର୍ବୁଦ, ସ୍ତନ୍ୟଫୁଲା, ପାଇଲ୍ସ ରେ ଶସର ପୁଲଟିସ୍ ଲଗାଇ ଦିଆଯାଏ । ଏହି ଶସ ମଧ୍ୟ ଆଖିରେ ଲଗାଇଲେ ଲାଲ ହେବା କମିଯାଏ ।

## ୧୪. ଚିରାଇତା

## (ANDROGRAPHAIS PANIGULATA)

ଏହା ଏକ କ୍ଷୁଦ୍ର ଗୁଳ୍ମ ଅଟେ । ଉଚ୍ଚତା ୨-୪ ଫୁଟ ପର୍ଯ୍ୟନ୍ତ ହୋଇଥାଏ । ଏହି ଗଛର ଆୟୁ ୧ବର୍ଷ ଅଟେ । ଏହା ପ୍ରାୟ ଭାରତର ସବୁ ଆଡେ ମିଳିଥାଏ । ଏହାର କାଣ୍ଡ, ପତ୍ର, ଫୁଲ ଚେର ଆଦି ଔଷଧ ରୂପେ ବ୍ୟବହାର ଯୋଗ୍ୟ । ଚେର ଓ କାଣ୍ଡ ସର୍ବାଧିକ ଗୁଣ ଯୁକ୍ତ ଅଟନ୍ତି । ଏହାର କ୍ୱାଥ ଅଥବା ଚୂର୍ଣ୍ଣ କୌଣସି ମଧୁର ବାହାକ ସହିତ ଅନୁପାନ ଭେଦ ଅନୁସାରେ ସେବନ କରାଯାଏ ।

ଏହାକୁ ସନ୍ନିପାତ ଜ୍ୱର, ବ୍ରଣ, ରକ୍ତ ଦୋଷର ସର୍ବଶ୍ରେଷ୍ଠ ଔଷଧ କହନ୍ତି । ଏହା ଏକ ପ୍ରକାରର ପ୍ରତି ସଂକ୍ରାମକ ଔଷଧ ଅଟେ । ତାହା ଜ୍ୱର ଉତ୍ପନ୍ନ କରୁଥିବା ମୂଳ କାରଣକୁ ନିବାରଣ କରେ । ତିକ୍ତ ଗୁଣ ଯୋଗୁ ଏହା କଫ, ପିତ୍ତ ଶମକ ଓ ସ୍ୱଳ୍ପ ବୀର୍ଯ୍ୟ ହେତୁ ବାତ ନାଶକ । କୁଷ୍ଠ, କୃମି ଓ ବ୍ରଣ ରୋଗକୁ ଆରୋଗ୍ୟ କରେ । ଚିରେଇତା କ୍ୱାଥ ଏକମାସ ନିୟମିତ ସେବନ କଲେ କୁଷ୍ଠ ରୋଗ ସଂପୂର୍ଣ୍ଣ ଆରୋଗ୍ୟ ହୁଏ ।

ଏଲୋପ୍ୟାଥି, ଆୟୁର୍ବେଦ, ହୋମିଓ ପାଥି ଏବଂ ୟୁନାନୀ ସମସ୍ତ ପଦ୍ଧତିରେ ଏହାର ଉପଯୋଗୀତାକୁ ଏକ ସ୍ୱରରେ ସ୍ୱୀକାର କରାଯାଇଛି ।

## ୧୫. ଚମ୍ପା (MECHELIA CHAMPAK)

ଚମ୍ପା ଚାରିପ୍ରକାରର ଯଥା- ଶ୍ୱେତ ଚମ୍ପା, କନକ ଚମ୍ପା, ଚେଣି ଚମ୍ପା ଓ କାଠ ଚମ୍ପା । ଏମାନଙ୍କ ମଧ୍ୟରୁ ଶ୍ୱେତ ଚମ୍ପା ଓ କନକ ଚମ୍ପା ଦୁଇ ଜାତି ପ୍ରଧାନ । ଶ୍ୱେତ ଓ କନକ ଏ ଦୁଇଜାତି ଚଂପା ମଧ୍ୟରୁ କନକ ଜାତିର ଚଂପା ସର୍ବୋତ୍କୃଷ୍ଟ । ଶ୍ୱେତ ଜାତିର ଚଂପା ଫୁଲ ଅଳ୍ପ ହଳଦିଆ ମିଶ୍ରିତ ଶ୍ୱେତ ବର୍ଣ୍ଣ ଦିଶେ । କନକ ଚଂପା ହଳଦିଆ ଅଟେ ଏବଂ ଖୁବ ସୁଗନ୍ଧିତ । ଗଛ କିନ୍ତୁ ଏକ ପ୍ରକାର ଫୁଲ ଫୁଟିଲା ପରେ ଜାତି ଜଣା ପଡେ । ଚଂପା ଫୁଲକୁ ସଂଘିବା ମନା କାରଣ ତା ମଧ୍ୟରେ ଥିବା କୀଟ ନାକ ମଧ୍ୟକୁ ଯାଇ ରୋଗ ସୃଷ୍ଟି କରେ । ଚଂପା ଫୁଲ, ପତ୍ର ଓ ଗଛର ଛାଲି ଔଷଧି ରୂପେ ପ୍ରଯୁକ୍ତ ହୁଏ ।

ଏହା କଟୁ ତିକ୍ତ କଷାୟ ରସ, ଶୀତଳ ଏବଂ କଣ୍ଠ କୁଷ୍ଠ, ବ୍ରଣ, ଦାହ, କୃମି, କଫ, ପିତ୍ତ ପ୍ରକୋପ, ମୂତ୍ରକୃଚ୍ଛ୍ର ଓ ବାତ ରକ୍ତ ରୋଗ ନିବାରକ ଅଟେ ।

ଚମ୍ପା ପତ୍ରର ରସ ଚୂନପାଣି ସହିତ ସେବନ କଲେ କାସ, ରକ୍ତପିତ୍ତ ଓ ମୂତ୍ରଶୟର ସମସ୍ତ ରୋଗ ବିନାଶ କରେ । ଚମ୍ପା ପତ୍ରର ବଟା ଦେହରେ ଲଗାଇଲେ ଚମ ଉକ୍କୁଣୀ ସମୂଳେ ବିନାଶ ହୁଅନ୍ତି । ଆଦିବାସୀ ମାନେ ଚମ୍ପା ଗଛର ଚେରକୁ ପାନ ଚେର ସହିତ ମିଶାଇ ଋତୁସ୍ରାବର ୪ର୍ଥ ଦିବସ ଠାରୁ ୧୦ଦିନ ପର୍ଯ୍ୟନ୍ତ ସେବନ କରି ଗର୍ଭନିରୋଧ କରାଇଥାନ୍ତି ।

## ୧୬. ଚିତାମୂଳ (PLUMBAGO ZEYLARICA)

ଏହା ଏକ ଗୁଳ୍ମ । ଶ୍ୱେତ ଓ ରକ୍ତ ଭେଦରେ ଏହା ଦୁଇ ପ୍ରକାର । ଶ୍ୱେତଚିତା ମୂଳରେ ଫୁଲ ଧଳା ଓ ପତ୍ରର ଶିରା ମଧ ଧଳା । ରକ୍ତ ଚିତା ମୂଳର ଫୁଲ ନାଲି ଓ ପତ୍ରର ଶିରା ଗୁଡିକ ମଧ ନାଲି ଏହା ବିଷାକ୍ତ ଅଟେ । ଏହାର ମୂଳରେ ଚେର ଗୁଡିକ ମାଂସଳ ଓ ମୋଟା ହୋଇଥାଏ । ଏହାକୁ ଚିତା ମୂଳ କହନ୍ତି । ରକ୍ତ ଚିତା ମୂଳ ଅଧିକ ବିଷାକ୍ତ ହୋଇ ଥିବାରୁ ଏହା ଔଷଧରେ ବ୍ୟବହୃତ ନ ହୋଇ କେବଳ ଶ୍ୱେତ ଚିତାମୂଳ ବ୍ୟବହୃତ ହୋଇଥାଏ ।

ଶ୍ୱେତ ଚିତାମୂଳ ଉଷ୍ଣବୀର୍ଯ୍ୟ, କଟୁପାଚକ, ଅଗ୍ନି ବର୍ଦ୍ଧକ ଓ ଅଳ୍ପ ବିଷାକ୍ତ ଏବଂ ଅଜୀର୍ଣ୍ଣ, ଗୁଳ୍ମ, ପ୍ଲୀହା, ଯକୃତ ପ୍ରଦାହ, ଉଦରୀ ଶୂଳ, କୃମି, ଶୋଥ, ଅର୍ଶ, କାସ, ଗ୍ରହଣୀ, କୁଷ୍ଠ, ବ୍ରଣ, ପ୍ରଭୃତି ରୋଗ ବିନାଶକ ଅଟେ ।

ଚିତା ମୂଳକୁ ଜଳରେ ବାଟି ଧବଳ ଛଉ୍‌ ଉପରେ ନିୟମିତ ପ୍ରଲେପ ନେଲେ ତାହା ଆରୋଗ୍ୟ ହୁଏ ।

ଉଷ୍ଣ ଜଳରେ ଚିତାମୂଳ ଚୂର୍ଣ୍ଣ ଗୋଳି ସେବନ କଲେ ଅଜୀର୍ଣ୍ଣ ଅଗ୍ନିମାନ୍ଦ୍ୟ ଅର୍ଶ, କ୍ଷତ, ଶୂଳ, ଉଦରୀ ପ୍ରଭୃତି ରୋଗ ଆରୋଗ୍ୟ ହୋଇଥାଏ ।

ଗାଈଦୁଧ ସହିତ ଚିତାମୂଳରୁ ଅଳ୍ପ ମିଶାଇ ଦିନିଦିନ ପର୍ଯ୍ୟନ୍ତ ସେବନ କଲେ ଦେହ ନିରୋଗ ରହିଥାଏ ।

ଚିତା ମୂଳରୁ ଅଳ୍ପ ପରିମାଣରେ ନେଇ ଉଷ୍ଣଜଳ ସହିତ ଖଲି ସେଥିରେ ମହୁ ମଶାଇ ସେବନ କରାଇଲେ ପ୍ରସବ ଯନ୍ତ୍ରଣା ଅନୁଭବ କରୁଥିବା ସ୍ତ୍ରୀର ଶିଘ୍ର ପ୍ରସବ ହୁଏ ।

## ୧୭. ତୁଳସୀ (ASHMAMA SAIKTAMA)

ଆୟୁର୍ବେଦ ଶାସ୍ତ୍ରରେ ତୁଳସୀକୁ ଏକ ମହାନ ସର୍ବୋଷଧୀ ଆଖ୍ୟା ଦିଆଯାଇଛି । ଏହାକୁ ସମସ୍ତେ ଜାଣିଛନ୍ତି । ହିନ୍ଦୁ ଧର୍ମରେ ପ୍ରେତ୍ୟେକ ଗୃହରେ ସମ୍ମୁଖଭାଗରେ ତୁଳସୀ ଚଉଁରା ଥାଏ । ତୁଳସୀ ଛଅ ସାତ ପ୍ରକାରର ଥାଏ । କଳା ତୁଳସୀ ଓ ଶ୍ୱେତ ତୁଳସୀ ଦୁଇ ଜାତିର ପ୍ରଧାନ । ଗୁଣ ଧର୍ମ ଦୃଷ୍ଟିରୁ କଳା ତୁଳସୀକୁ ହିଁ ଶ୍ରେଷ୍ଠ ମନେ କରାଯାଏ । ଏହାର ପତ୍ର, ମୂଳ, ବୀଜ ଆଦି ଔଷଧୀୟ ଗୁଣରେ ପରିପୂର୍ଣ୍ଣ ।

ତୁଳସୀ ଅଳ୍ପ ତିକ୍ତ ମିଶ୍ରିତ କଟୁରସ, ଅଗ୍ନିବର୍ଦ୍ଧକ, ରକ୍ଷାକରାକ, ଉଷ୍ଣବୀର୍ଯ୍ୟ, ଅଗ୍ନିବର୍ଦ୍ଧକ ଓ କଫଶ୍ଳେଷ୍ମଘ୍ନ ଏବଂ କୃମି, ଶ୍ଳେଷା କାସଜ୍ୱର, ବାତ, ବାୟୁ, ବାନ୍ତି, କ୍ଷୟ, କ୍ଷତ, କୁଷ୍ଠ, ରକ୍ତ ବିକୃତି, ଭୂତାବେଶ, ମୁତ୍ରକୃଚ୍ଛ୍ର ଓ ଗଳଗ୍ରହ ନିବାରକ ଅଟେ । ଏହାକୁ ଭିନ୍ନ ଭିନ୍ନ ଅନୁପାନରେ ଭିନ୍ନ ଭିନ୍ନ ରୋଗ ପାଇଁ ପ୍ରଯୁକ୍ତ କରାଯାଇ ଥାଏ ।

ନିୟମିତ ତୁଳସୀ ରସ ଓ ମଧୁ ସେବନରେ ଶରୀରରୁ ସମସ୍ତ ଥଣ୍ଡା ରୋଗ ଦୂରୀଭୂତ ହୋଇଯାଇଥାଏ ।

## ୧୮. ତାଳମୂଳୀ (CURCULLIGO ORCHIOIDES)

ଏହା ଏକ ଛୋଟ ତାଳ ଗଛପରି ହୋଇଥିବାରୁ ଏହାକୁ ତାଳମୂଳୀ ନାମ କାରଣ କରାଯାଇଛି । ଏହାକୁ ଖୋଳିଲେ ଏହାର ମୂଳ ବାହାରେ । ଏହା ଔଷଧ ରୂପେ ବ୍ୟବହାର ହୁଏ । ଏହା ଦୁଇ ପ୍ରକାରର ଥାଏ । ଗୋଟିଏ ଜାତିର ମୂଳ କୃଷ୍ଣବର୍ଣ୍ଣ ଆଉ ଗୋଟିଏ ଶୁକ୍ଳ ବର୍ଣ୍ଣ । କୃଷ୍ଣବର୍ଣ୍ଣର ତାଳ ମୂଳୀକୁ କଳାମୂଷଳୀ ଓ ଶ୍ୱେତବର୍ଣ୍ଣର ତାଳମୂଳୀକୁ ଧଳାମୂଷଳୀ କୁହାଯାଏ । ଉଭୟ ପ୍ରକାର ଗଛର ଗୁଣ ସମାନ । ଖରାଦିନେ ଏହା ମରିଯାଏ କିନ୍ତୁ ବର୍ଷା ଦିନରେ ପୁଣି ଗଜା ବାହାରି ଗଛ ହୁଏ । ଏହାର ମୂଳ କେବଳ ଔଷଧି ରୂପେ ବ୍ୟବହାର ହୁଏ ।

ତାଳମୂଳୀ ତିକ୍ତ ମିଶ୍ରିତ ମଧୁର ରସ । ଗୁରୁପାକ, ଶୀତଳ ଉଷ୍ଣବୀର୍ଯ୍ୟ, ବଳ ବର୍ଦ୍ଧକ, ରାସାୟନ, କାନ୍ତି ବର୍ଦ୍ଧକ, ପୁଷ୍ଟିକର, କଫଜନକ ଓ ମଙ୍ଗଳ ଦାୟକ, ଧାତୁରୋଗ, ପିତ୍ତ ପ୍ରକୋପ, ବାୟୁ ବିକାର, ଶୁକ୍ରହୀନତା, ରତି ସମ୍ଭୋଗ, ଅସାମର୍ଥତା, ବାର୍ଦ୍ଧକ୍ୟ, ଭ୍ରମ, ଚକ୍ଷୁରୋଗ, କର୍ଣ୍ଣରୋଗ, ନାଶାରୋଗ,

ଜିହ୍ୱାରୋଗ, ଅର୍ଶରୋଗ ଓ ଦେହର ଶୁଷ୍କତା ବିନାଶକ ଅଟେ । ଅଦିବାସୀମାନେ ତାଳମୂଳୀ ଚୂର୍ଣ୍ଣକୁ ମହୁ ସହିତ ମିଶାଇ ପ୍ରସବପରେ ମହିଳାମାନଙ୍କୁ ସେବନ କରାଇଥାନ୍ତି । ଏହା ଦ୍ୱାରା ସେମାନଙ୍କର ଖୀର ବୃଦ୍ଧି ହୋଇଥାଏ ।

## ୧୯. ଦୁଦୁରା (DATURA)

ଏହା ପ୍ରାୟ ସର୍ବତ୍ର ଦେଖାଯାଏ । ଦୁଇ ପ୍ରକାରର ଦୁଦୁରା ଦୃଷ୍ଟି ଗୋଚର ହୁଏ । ଶୁକ୍ଳ ଓ କୃଷ୍ଣ, ଶୁକ୍ଳ ଦୁଦୁରାର ଫୁଲ ଗଛ ଆଦି ସମସ୍ତ ଅଂଶ ଧଳା ଓ କୃଷ୍ଣ ବର୍ଣ୍ଣର ଦୁଦୁରା ଅଛ ଲାଲ ମିଶ୍ରିତ କଳା । ଏହି କଳା ଦୁଦୁରାରେ ମଧ୍ୟ ଗୋଟିଏ ଜାତିର ଅଛି ତାହା ଗାଢ ବର୍ଣ୍ଣର, ତାହାକୁ ତ୍ରୀପୁରା କଳା ଦୁଦୁରା କୁହାଯାଏ । ଏହି ଜାତିଟି ଶ୍ରେଷ୍ଠ ଅଟେ । ଔଷଧୀୟ ଗୁଣ ପ୍ରାୟ ସମସ୍ତ ଦୁଦୁରାର ସମାନ ଅଟେ ।

- କଳା ଦୁଦୁରା ପତ୍ରକୁ ଛେଚି ରସ ବାହାର କରି ସେଥିରେ ଅଳ୍ପ ଟାଙ୍ଗଣା ଖଇ ଚୂର୍ଣ୍ଣ ମିଶାଇ କାନରେ ପକାଇଲେ କାନରୁ ପୂଜ ବୁହା ଓ କ୍ଷତ ନିବାରିତ ହୁଏ ।
- ଦୁଦୁରା ପତ୍ରର ରସକୁ ମୁଣ୍ଡରେ ଏକ ସପ୍ତାହ ଲଗାଇଲେ ଚୁଳ ଝଡିବା ତତ୍‌କ୍ଷଣାତ ବନ୍ଦ ହୋଇଯାଏ । ଏହା ବହୁ ପରିକ୍ଷିତ ।
- ପତ୍ରର ରସକୁ ଅଳ୍ପ ଟଭା ଲେମ୍ବୁ ରସ ମିଶାଇ ମୁଣ୍ଡରେ ଲଗାଇଲେ କେଶର ଅକାଳ ପକ୍ୱତା ନିବାରିତ ହୁଏ ।
- ଏହାର ପତ୍ରର ରସ ସହିତ ସୈନ୍ଧବ ଲୁଣ ମିଶାଇ ନିଆଁରେ ଗରମ କରି ବାରମ୍ବାର ମାଲିସ କଲେ ଗୋଦର, ଏକଶିରା ପ୍ରଭୃତି ରୋଗ ନିବାରିତ ହୁଏ ।
- ଏହାର ଫଳକୁ ପୋଡି ପାଉଁସକୁ ସୋରିଷ ତେଲରେ ଖଲି ଲଗାଇଲେ ବ୍ରଣ, ବିଗିଚି ଓ କନ୍ଧା ଭଲ ହୋଇଥାଏ ।

## ୨୦. ଦୁବ (CYNODON DACTYLON)

ଦୁବ ଦୁଇ ପ୍ରକାର । ଗୋଟିଏ ସାଧାରଣ ସବୁଜ ରଙ୍ଗର ଓ ଅନ୍ୟଟି ଶ୍ୱେତ ଦୁବ । ଏହାର ଔଷଧୀୟ ଗୁଣ ସର୍ବବିଦିତ । ଏବଂ ଖୁବ୍ ଦରକାରୀ । ଦୁବ ଦେବାର୍ଚ୍ଚନା ଠାରୁ ଅରମ୍ଭ କରି ବିଭିନ୍ନ ଔଷଧ ଇତ୍ୟାଦିରେ ବ୍ୟବହୃତ ହୋଇଥାଏ ।

ଏହା ଅଳ୍ପ କଷାୟ ମିଶ୍ରୀତ ମଧୁର ରସ । ଶୀତଳ ରକ୍ତ ରୋଧକ, ରକ୍ତ ପିତ୍ତ, ପିତ୍ତ, ଦାହ, ରକ୍ତ ବିକୃତି, ପୀନସ, ଉତାବେଶ, ଅର୍ଶ, କ୍ଷତ, ବ୍ରଣ ଓ ଶୀତ ପିତ୍ତ ପ୍ରଭୃତି ରୋଗ ନିବାରକ ।

■ ଦୁବର ରସକୁ ମିଶ୍ରୀ ଗୁଣ୍ଡା ମିଶାଇ ଶିଶୁମାନଙ୍କୁ ସେବନ କରାଇଲେ ବାନ୍ତି ନିବାରିତ ହୁଏ ।

■ ଦୁବରସକୁ ନାକରେ ପକାଇଲେ ନାକରୁ ରକ୍ତ ପଡିବା ବନ୍ଦ ହୁଏ ।

■ କାଟି ହୋଇଯିବା ସ୍ଥାନରେ ଏହାର ରସକୁ ଲଗାଇଲେ ରକ୍ତ ବୋହିବା ବନ୍ଦ ହୋଇଯାଏ ।

■ ଦୁବ ମୂଳକୁ ଅରୁଆ ଚାଉଳ ସହିତ ବାଟି ପ୍ରଲେପ ଦେଲେ ଶିରପୀଡା ନିବାରିତ ହୁଏ ।

■ ଦୁବ ରସରେ ଅଂଳାରସ ଏବଂ ମିଶ୍ରି ଗୁଣ୍ଡା ମିଶାଇ ପ୍ରତ୍ୟେହ ସେବନ କଲେ ମେହ ଓ ପ୍ରମେହ ରୋଗ ନିବାରିତ ହୁଏ ।

## ୨୧. ନିମ୍ବ (AZADIRECTA INDICA)

ଏହି ବୃକ୍ଷ ଭାରତରେ ସର୍ବତ୍ର ଉତ୍ପନ୍ନ ହୁଏ । ଏହି ବୃକ୍ଷକୁ ନୀଳକଣ୍ଠ ମଧ୍ୟ କୁହାଯାଏ । କାରଣ ବାତାବରଣରେ ବ୍ୟାପ୍ତ ପ୍ରଦୂଷଣର ଗରଳ ପାନ କରି ଏହା ବାୟୁକୁ ଶୁଦ୍ଧ କରିବାରେ ସର୍ବାଧିକ ଯୋଗଦାନ କରେ । ଏଣୁ ଏହାର ଆଦର ଅଧିକ ଥାଏ ।

ନିମ୍ବର ଛେଲି ପତ୍ର ସିଧା ପ୍ରଯୁକ୍ତ କାରଯାଇ ପାରେ । ନିମ୍ବଫଳକୁ ଘଣାରେ ପେଶି ତେଲ ବାହାର କାରଯାଏ । ଏହି ସବୁ ବସ୍ତୁ ହଜାର ହଜାର ବର୍ଷରୁ ଆୟୁର୍ବିଜ୍ଞାନରେ ବ୍ୟବହୃତ ହୋଇ ଆସୁଅଛି । ଚ଼ରକ ଏବଂ ସୁଶୃତ ଉଭୟ ମହର୍ଷି ଏହାକୁ କୁଷ୍ଠ, ଚ଼ର୍ମରୋଗ ତଥା ରକ୍ତ ବିକାର ଉପଶମ ନିମିତ୍ତ ସର୍ବୋତ୍ତମ ଔଷଧ କହିଛନ୍ତି ।

ନିମ୍ବ ଅତ୍ୟନ୍ତ ତିକ୍ତ ରସ, ଶୀତ ବିର୍ଯ୍ୟ, ଧାରକ, କାମ ନିବାରକ, ଜ୍ୱର, ତୃଷ୍ଣା, କଣ୍ଡୁ, କ୍ଷତ, ବ୍ରଣ, କୁଷ୍ଠ ଓ ନାନାଦି ଚ଼ର୍ମରୋଗ, କୃମିରୋଗ କାସ, ଅର୍ଶ, ପିତ୍ତ ବିକାର ନିବାରକ ଅଟେ । ନିମ୍ବ ତେଲ ଆଦିବାସୀମାନଙ୍କର ଗର୍ଭ ନିରୋଧକ ଭାବେ ବ୍ୟବହାର କରିଥାନ୍ତି ।

ବସନ୍ତ ଋତୁର ପୂର୍ବରୁ ନିମ୍ବ ସେବନ ଦ୍ୱାରା ବସନ୍ତ ରୋଗର ଆକ୍ରମଣରୁ ତ୍ରାହୀ ମିଳିଥାଏ । ନିମ୍ବତେଲର ନୈସ୍ୟ ଗ୍ରହଣ କଲେ ଦୃଷ୍ଟି ଶକ୍ତି ଓ ଶ୍ରବଣ ଶକ୍ତି ବୃଦ୍ଧି ହୁଏ । ଏହି ତୈଳ ପ୍ରଲେପ ଦ୍ୱାରା ସମସ୍ତ ଚର୍ମରୋଗ ବିନାଶ ହୋଇଥାଏ । ଶାସ୍ତ୍ରକାର ମାନେ କୁଷ୍ଠ ରୋଗୀମାନଙ୍କୁ ନିମ୍ବ ବୃକ୍ଷତଳେ ବାସ କରିବା ପାଇଁ ମଧ୍ୟ ପରାମର୍ଶ ଦେଇଛନ୍ତି ।

ନିମ୍ବ ବୃକ୍ଷ ଦେହରେ ଏହିସବୁ ବିଶେଷ ଗୁଣ ନିହିତ ଥିବାରୁ ଏହାକୁ ସଂରକ୍ଷଣ କରିବା ପାଇଁ ଆନ୍ତର୍ଜାତିକ ସ୍ତରରେ ନିତି ନୀୟମ ପ୍ରଣୟନ କରାଯାଇଛି ।

## ୨୨. ପଳାସ (BUTEA FRONDOSA)

ଏହା ଏକ ବହୁ ପରିଚିତ ବୃକ୍ଷ ଅଟେ । ଏହାର ଔଷଧୀୟ ଗୁଣ ମଧ୍ୟ ଅନେକ । ଏହା ଖୁବ ବଡ ଗଛ ଏବଂ ପତ୍ର ହାତୀ କାନ ପରିକା ହୋଇଥାଏ । ଫୁଲ ସବୁ ପାଟ ରଙ୍ଗ ଭଳି ଲାଲ ଓ ଗଂଧ ଶୂନ୍ୟ । ଏହା ଅତ୍ୟନ୍ତ ଉପକାରୀ ବୃକ୍ଷ ଅଟେ । ପ୍ରାୟ ସର୍ବତ୍ର ଦେଖାଯାଏ ।

ଏହି ବୃକ୍ଷର ଫୁଲ, ଚେ଼ର ଓ ଛାଲି ଔଷଧ ରୂପେ ବ୍ୟବହାର କରାଯାଏ । ଆଦିବାସୀମାନେ ଏହାର ଚେ଼ରକୁ ଓ ଫୁଲକୁ ଗର୍ଭ ନିରୋଧକ ଔଷଧ୍ ରୂପେ ବ୍ୟବହାର କରିଥାନ୍ତି ।

ପଳାସ, କଷାୟ, କଟୁ ମିଶ୍ରିତ ତିକ୍ତ ରସ, ସ୍ନିଗଧ, ଉଷ୍ଣବୀର୍ଯ୍ୟ, ଅଗ୍ନି ଦୀପକ, ବୀର୍ଯ୍ୟ ବର୍ଦ୍ଧକ, ସାରକ, ଭଗ୍ନ ସଂଯୋଯକ, ବ୍ରଣ, ଭଗନ୍ଧର ଅର୍ଶ, କ୍ରୀମୀ, ଗ୍ରହଣୀ, ଗୁଳ୍ମ, ପ୍ଲୀହା, ଯକୃତ ପ୍ରଭୃତି ରୋଗର ବିନାଶକ । ପଳାସ ଛାଲିକୁ ବାଟି ଭାଙ୍ଗିଯାଇ ଥିବା ସ୍ଥାନରେ ଲେପ ଦେଇ ବାନ୍ଧି ରଖିଲେ ଭାଙ୍ଗିଯାଇଥିବା ସ୍ଥାନ ଯୋଡି ହୋଇଯାଏ । ପତ୍ରର ରସ ମଧୁ ସହିତ ସେବନ କଲେ ଶୁକ୍ରବୃଦ୍ଧି ହୁଏ ଏବଂ ଇନ୍ଦ୍ରୀୟର ଉତ୍ତେଜନା ପ୍ରବଳ ହୁଏ । ପଳାସ ଚେ଼ର ସହିତ କଳା ପିପ୍ପଳୀ ଚୂର୍ଣ୍ଣ ଋତୁସ୍ରାବର ୪ର୍ଥ ଦିନଠାରୁ ୧୦ଦିନ ବ୍ୟବହାର କଲେ ତାହା ଗର୍ଭ ନିରୋଧକ ଭାବେ କାର୍ଯ୍ୟ କରେ ।

## ୨୩. ପସାରୁଣୀ (PAEDERIA FOITIDA)

ଏହା ଏକ ଲତା ଜାତୀୟ ଉଦ୍ଭିଦ । ଦୁର୍ଗନ୍ଧଯୁକ୍ତ କିନ୍ତୁ ମହାଉପକାରୀ ଅଟେ । ପତ୍ରରେ ଅଳ୍ପ ରକ୍ତ ବର୍ଣ୍ଣର ତେଜ ଦେଖାଯାଏ । କେତେକ ସ୍ଥାନରେ ମଧ୍ୟ

ପାଣ୍ଡୁରିଆ ଦିଶିଥାଏ । ଏହାର ପତ୍ର କେବଳ ମାଡିଥାଏ ।

ପସାରୁଣୀ କଷାୟ ମିଶ୍ରିତ ତିକ୍ତ ରସ, ଉଷ୍ଣବୀର୍ଯ୍ୟ, ଗୁରୁପାକ, ବଳକାରକ, ଶୁକ୍ର ବର୍ଦ୍ଧକ, ଏହା କଫ ରୋଗ, ବାତରୋଗ, ଅର୍ଶ, ଶୋଥ, ପିତ୍ତ, ଅମ୍ଳପିତ୍ତ, କଣ୍ଡୁ, କୁଷ୍ଠ ଓ ଶରୀରର ଯାବତୀୟ ବେଦନା ନାଶକ ଅଟେ । ପସାରୁଣୀ ପତ୍ରକୁ ଅରୁଆ ଚାଉଳ ସହିତ ବାଟି ଜାଉ କରି ପ୍ରସବ କରିଥିବା ଗାଈକୁ ଖାଇବାକୁ ଦେଲେ ଗାଈ ବହୁତ ଦୁଗ୍ଧ ଦେଇଥାଏ ।

ପସାରୁଣୀ ରସରେ ଅଳ୍ପ ପାଣି ମିଶାଇ ପିଲାକୁ ଖୁଆଇଲେ ତାଙ୍କଠାରୁ ସମସ୍ତ କୃମି ବିନାଶ ହୁଅନ୍ତି । ପସାରୁଣୀ ତୈଳ, ଆଣ୍ଠୁଗଣ୍ଠି ବାତ ଦୂର କରେ ।

## ୨୪. ପାଳଧୁଆ (ERYTHRINA INDICA)

ଏହା ଏକ ମଧ୍ୟମ ଧରଣର ବୃକ୍ଷ । ସର୍ବତ୍ର ଦେଖିବାକୁ ମିଳେ । ଗଣ୍ଡି, ଡାଳ ଓ ଶାଖା ସବୁ କଣ୍ଟକ ପୂର୍ଣ୍ଣ । ପତ୍ର ତ୍ରିକୋଣୀ ଅଟେ । ଏହାର କାଠ ଖୁବ ହାଲୁକା ଓ ନରମ ଅଟେ । ଏହି ବୃକ୍ଷର ଔଷଧୀୟ ଗୁଣ ସହିତ ଅଧିକାଂଶ ପ୍ରାୟ ପରିଚିତ । ଏହାର ପତ୍ର, ଛାଲି ଓ ଚେର ଔଷଧୀ ରୂପେ ପ୍ରଯୁକ୍ତ ହୁଏ ।

ଏହା ଏକ ତିକ୍ତ ରସ ଯୁକ୍ତ, ବାତ,ପିତ୍ତ ନାଶକ, ରକ୍ତ ବିକାର ଦୂର କରେ । ପତ୍ରର ରସ ମହୁ ସହିତ ସେବନ କଲେ ପେଟରୁ ସମସ୍ତ କୃମି ଓ ଅନ୍ୟାନ୍ୟ କୀଟ ସମୂଳେ ବିନାଶ ଯାଆନ୍ତି । ପେଟକୁ କୃମି ମୁକ୍ତ କରିବା ପାଇଁ ଆୟୁର୍ବେଦରେ ଏହି ରସର ପ୍ରୟୋଗ ପାଇଁ ଉପଦେଶ ଦିଆଯାଇଛି । ଛାଲିକୁ ବାଟି ଏକଶୀରାରେ ଲେପ ଦେଲେ ତାହା ଆରୋଗ୍ୟ ହୁଏ । ଏହା ଛଡା ଆଦିବାସୀମାନେ ଗର୍ଭ ନିରୋଧ ପାଇଁ ପାଳଧୁଆ ଚେରକୁ ବାଟି ସେବନ କରିଥାନ୍ତି ।

## ୨୫. ପୁନର୍ନବା (BOERHAVIA DIFFUSA)

ଏହା ଏକ ଲତାଜାତୀୟ ଉଦ୍ଭିଦ । ଶ୍ୱେତ, ରକ୍ତ ଓ କୃଷ୍ଣ ଭେଦରେ ତିନି ପ୍ରକାରର ଦେଖାଯାଏ । ଏହା ଭୂଇଁ ଉପରେ ସାମାନ୍ୟ ଲତା ତୁଲ୍ୟ ମାଡିଥାଏ । ଶ୍ୱେତ ବର୍ଣ୍ଣର ପୁରୁଣୀ ଗୁଣରେ ଉତ୍କୃଷ୍ଟ ଅଟେ । ଶୋଥ ରୋଗ ଓ ଯାବତୀୟ ନେତ୍ର ରୋଗରେ ଏହା ପ୍ରଧାନ ଉପକାରୀ ।

ପୁରୁଣୀ ଅଳ୍ପ କଷାୟ ମିଶ୍ରିତ କଟୁ, ତିକ୍ତ ରସ, ଓ ଉଷ୍ଣ, ଚକ୍ଷୁର ହିତକରେ,

ଅଗ୍ନି ବର୍ଦ୍ଧକ ଅଟେ । ଶୋଥ, ଉଦରୀ ଶୂଳ, ଗୁଳ୍ମ, ବିଷଦୋଷ, ପିତ୍ତ ବିକୃତି, ବାୟୁ, କଫ, କାମଳ, ପାଣ୍ଡୁ, ଅର୍ଶ, ଯବତୀୟ ପ୍ରକାର ବ୍ରଣ, କ୍ଷତ, ଦଦ୍ରୁ କଣ୍ଡୁ ଓ ଚର୍ମରୋଗ ବିନାଶକ ଅଟେ ।

ଶ୍ୱେତ ପୁରୁଣୀ ରସ ସହିତ ଗୋଲ ମରିଚ ଗୁଣ୍ଡ ମିଶାଇ ପ୍ରତ୍ୟେହ ସଂଧ୍ୟା ଓ ସକାଳେ ୨ଥର ସେବନ କଲେ ସମସ୍ତ ପ୍ରକାର ଅସାଧ ଶୋଥ ରୋଗ ଅରୋଗ୍ୟ ହୋଇଥାଏ ।

ଶ୍ୱେତ ପୁରୁଣୀ ରସ ଗାଇ ଲହୁଣୀରେ ଖଲି ଆଖିରେ ଅଞ୍ଜନ ପରି ପିନ୍ଧିଲେ ଚକ୍ଷୁରୁ ଜଳ ବୋହିବା ଓ ଚକ୍ଷୁ ଲାଲ ହେବା ବନ୍ଦ ହୁଏ । ଚାଉଳ ଧୁଆ ଜଳ ସହିତ ଶ୍ୱେତ ପୁରୁଣୀକୁ ବାଟି ମହୁ ମିଶାଇ ନିୟମିତ ଦୁଇ ବେଳା ଲେଖାଏ ସେବନ କଲେ ସ୍ତ୍ରୀ ଲୋକର ରକ୍ତ ପ୍ରଦର ରୋଗ ଭଲ ହୁଏ ।

ଶ୍ୱେତ ପୁରୁଣୀ ଚୂର୍ଣ୍ଣ ସହିତ ସମ ପରିମିତ ମିଶ୍ରୀଗୁଣ୍ଡ ମିଶାଇ ସେବନ କଲେ ପିତ୍ତ ଜନିତ କାସ ଉପଶମ ହୁଏ ।

## ୨୬. ପୋଦିନା (MENTHA VIRIDIS)

ପୋଦିନା ସର୍ବତ୍ର ପରିଚିତ । ଏହି ଗଛ ସାଧାରଣତ ୧ଫୁଟରୁ ଦେଢଫୁଟ ପର୍ଯ୍ୟନ୍ତ ବଢିଥାଏ । ଏହାର ପତ୍ର ତୁଳସୀ ପତ୍ର ପ୍ରାୟ ଓ ସର୍ବାଙ୍ଗ ସୁଗନ୍ଧମୟ । ଏହା ଅତି କ୍ଷୁଦ୍ର ଗଛ ହେଲେ ମଧ ଅତୀବ ଉପକାରୀ ଅଟେ ।

ଏହା ଶୀତଳ ରୁଚିକର, କ୍ଷୁଧା ବର୍ଦ୍ଧକ, ପାଚକ, ଅଗ୍ନିଦୀପକ, ବଳକର ଏବଂ ଅଜୀର୍ଣ୍ଣ, କଫ, କାସ, ବମନ, ଅତିସାର ବାୟୁ, କୃମି ପ୍ରଭୃତିର ନିବାରକ ।

- ଏହି ପତ୍ରକୁ ସୈନ୍ଧବ ଲବଣ ସହିତ ବାଟି ସେବନ କଲେ ଅଜୀର୍ଣ୍ଣ ଓ ଅଗ୍ନିମାନ୍ଦ୍ୟ ବିନାଶ ହୁଏ ।
- ତେନ୍ତୁଳି ସହିତ ପତ୍ର ବାଟି ଚଟଣି କରି ଖାଇଲେ, ଅରୁଚି, ଅଜୀର୍ଣ୍ଣ ଦୂର ହୁଏ । ବାୟୁ ମଧ ପ୍ରଶମିତ ହୁଏ ।
- ଏହାର ପତ୍ରରେ ଶୁଣ୍ଠି ଓ ଲୁଣ ମିଶାଇ ବାଟି ଖାଇଲେ ଅମ୍ଳ ଦୋଷ ଓ ନାଳଝାଡା ନିବାରିତ ହୁଏ ।
- ହଳଦୀ ସହିତ ପୋଦିନା ପତ୍ର ବାଟି ପିଲାଙ୍କୁ ଖୁଆଇଲେ କୃମି ଦୋଷ ଓ ଅଜୀର୍ଣ୍ଣ ବିନାଶ ହୁଏ ।

■ ଏହାର ପତ୍ରରେ ଗୋଲ ମରିଚ ମିଶାଇ ବାଟି ସେବନ କରିଲେ କାମଳ କୃମି, ଆମ, ଅଜୀର୍ଣ୍ଣ ଶୂଳ, ବାୟୁ ଉପଦ୍ରବ ଓ ଅରୁଚି ନିବାରିତ ହୁଏ ।

## ୨୭. ପୋକସୁଙ୍ଘା (AGERATUM CONYZOIDES)

ପୋକ ସୁଙ୍ଘା ଏକ କ୍ଷୁଦ୍ର ଗଛ । ମୂଳା ପତ୍ର ପରି ପତ୍ର । ପ୍ରକାର ଭେଦରେ ଏହା ଦୁଇ ପ୍ରକାର । ଏହି ଉଭୟ ଜାତିର ଗଛ ସୁଗନ୍ଧି ଅଟେ । ଉଚ୍ଚରେ ବଢ଼ିଲେ ଏହା ଖୁବ ବେଶିରେ ଫୁଟେ ଦେଢଫୁଟ ପର୍ଯ୍ୟନ୍ତ ହୁଏ ।

ପୋକସୁଙ୍ଘା ତିକ୍ତରସ ମିଶ୍ରିତ କଟୁରସ । ଦେହର ବର୍ଣ୍ଣ କାରକ । ଜ୍ୱର, କଫ, ପିତ୍ତ ଦୋଷ, ଦାହ, ତୃଷ୍ଣା, ଅତିସାର, ରକ୍ତ ପିତ୍ତ, ଶିଶୁରୋଗ ଓ କାସ, ଶ୍ୱାସ ନିବାରକ ଅଟେ । ଏହାର ପତ୍ର ଓ ମୂଳ ଔଷଧ ରୂପେ ବ୍ୟବହାର ହୁଏ ।

■ ପୋକ ସୁଙ୍ଘା ରସରେ ମହୁ ମିଶାଇ ସେବନ କଲେ ସମସ୍ତ ପ୍ରକାର ଜ୍ୱର ଏବଂ ଅତିସାର ନିବାରିତ ହୁଏ ।

■ ଏହାର ରସରେ ପାନ ରସ ମିଶାଇ ଉଷୁମ କରି ସେବନ କରାଇଲେ ପିଲାମାନଙ୍କର କଫ ନିବାରିତ ହୁଏ ।

## ୨୮. ବାହାଡା (TARMINALIA BELERICA)

ଏହା ହରିଡା ପରି ଖୁବ ବଡ ଗଛ ହୋଇଥାଏ ଏବଂ ସାଧାରଣତ ୬୦ଫୁଟରୁ ଅଧିକ । ରାଜ୍ୟର ଗଡଜାତ ଅଂଚଳରେ ବହୁଳ ଭାବେ ଦେଖାଯାଏ । ଏହି ଗଛର ଫଳକୁ ବାହାଡା କୁହାଯାଏ । ଏହି ଫଳ ଆକୃତିରେ ହରିଡା ପରି ହୋଇଥିଲେ ମଧ୍ୟ ଶିରାଯୁକ୍ତ ନୁହେଁ କିନ୍ତୁ ପାଉଁସିଆ ଓ ମସୃଣ । ତ୍ରୀଫଳା ମଧ୍ୟରୁ ଏହା ଅନ୍ୟତମ ଫଳ । ଏ ଫଳକୁ କେବଳ ଔଷଧୀୟ ବସ୍ତୁ ଭାବରେ ବ୍ୟବହାର କରାଯାଏ ।

ବାହାଡା କଷାୟ ରସ, ଭେଦକର, କାସ ଓ ଶ୍ୱାସ ନାଶକାରୀ, କେଶ ଓନେତ୍ର ରୋଗ ହାରୀ, କୃମି, କଣ୍ଠୁ, କୁଷ୍ଠ, ଦାନ୍ତ ରୋଗ ବିନାଶକ ଅଟେ ।

ବାହାଡାର ରସକୁ ଜଳରେ ଭିଜାଇ ଛାଣି ସେହି ଜଳକୁ ମଧୁ ମିଶ୍ରିତ କରି ସେବନ କଲେ ସମସ୍ତ ପ୍ରକାର ଝାଡା ରୋଗ ନିବାରଣ ହୋଇଥାଏ । ମଞ୍ଜି ଭିତରେ ଥିବା ଶସକୁ ଜଳ ସହିତ ମର୍ଦ୍ଦନ କରି ମହୁ ମିଶାଇ ଅଞ୍ଜନ ପ୍ରସ୍ତୁତ କରାଯାଏ ଏବଂ ତାହା ସମସ୍ତ ପ୍ରକାର ଚକ୍ଷୁ ରୋଗ କ୍ଷୟ କାରକ । ବାହାଡାର ଚୂର୍ଣ୍ଣକୁ ଲୁଣ

ଓ ଉଷ୍ଣଜଳ ସହିତ ସେବନ କଲେ ତାହା କାସ ଓ ଶ୍ୱାସ ନିବାରଣ କରେ । ଅଗ୍ନିମାନ୍ଦ୍ୟ ଓ ଅତିସାର ଆରୋଗ୍ୟ କରେ । ଏହାକୁ ରାଶି ତେଲ କିମ୍ବା ଙ୍କଡା ତେଲରେ ମିଶ୍ରଣ କରି କେଶରେ ଲଗାଇବା ଦ୍ୱାରା ଅସମୟରେ ପକ୍ୱ କେଶ କଳା ହୋଇଥାଏ ।

## ୨୯. ବ୍ରାହ୍ମୀ (BACOPA MONNIERI)

ଏହା ଏକ କ୍ଷୁଦ୍ର ଲତିକା ସଦୃଶ ଉଦ୍ଭିଦ । ସନ୍ତ ସନ୍ତିଆ ଆଦ୍ରସ୍ଥାନରେ ବୃଦ୍ଧିପ୍ରାପ୍ତ ହୁଏ । ଏହାର ଡେମ୍ଫ ଟିକିଏ ଉପରକୁ ଉଠି ଟା ଆଗରେ ପତ୍ରଟି ମାନ ଥାଏ । ପତ୍ର ସବୁ ଛୋଟ ଛୋଟ ଏବଂ ତା ଚାରି ପାଖରେ କମ ହେଲାପରି ଦେଖାଯାଏ । ଏହାକୁ କେତେକ ସ୍ଥାନରେ ଥାଇକୁଡି କହନ୍ତି ।

ବ୍ରାହ୍ମୀ କଷାୟ ମିଶ୍ରିତ ମଧୁର ରସ, ଲଘୁପାକ, ସ୍ୱର ବର୍ଦ୍ଧିକ, ରସାୟନ, ମେଧାଶକ୍ତି ବର୍ଦ୍ଧକ, ସ୍ମୃତି କାରକ, ଶୀତଳ, ଆର୍ଯୁବର୍ଦ୍ଧକ, କାନ୍ତିପ୍ରଦ, ସ୍ମରଣ ଶକ୍ତି ବର୍ଦ୍ଧକ, ଦୃଷ୍ଟି ଶକ୍ତି ବର୍ଦ୍ଧକ ଓ ଇନ୍ଦ୍ରୀୟ ସମୂହର ପ୍ରସନ୍ନତା କାରକ ଓ ରକ୍ତ ଶୋଧକ । ଜ୍ୱର, କାସ, ଶ୍ୱାସ, ପ୍ଲୀହା, ଗୁଳ୍ମ, କଣ୍ଡୁ, ବିଷଦେଷ, ଶୋଥ, ଉନ୍ମାଦ, ବ୍ରଣ, କ୍ଷତ, କଣରୋଗ, ରକ୍ତ ପିତ୍ତ, ଅତିସାର, ଉନ୍ମାଦ ମୂକତା, କୁଷ୍ଠ, ବାତ, ରକ୍ତ, ଉପଦଂଶ, ମେହ, ପ୍ରମେହ ଓ ଯାବତୀୟ ପ୍ରକାର ଶିରରୋଗ ନାଶକ ଅଟେ ।

ବ୍ରାହ୍ମୀ ପତ୍ରର ରସ ମଧୁ ମିଶ୍ରିତ କରି ପିଲାକୁ ନିୟମିତ ସେବନ କରାଇଲେ ସେମାନଙ୍କର ବୁଦ୍ଧି ଓ ସ୍ମରଣ ଶକ୍ତି ଅସାଧାରଣ ଭାବେ ବୃଦ୍ଧି ହୋଇଥାଏ ।

## ୩୦. ବାସଙ୍ଗ (ADHATODAVASIKA)

ଏହା ଏକ ଛୋଟ ଧରଣର ଗଛ । ସାଧାରଣତ ୪ଫୁଟରୁ ୮ଫୁଟ ହୋଇଥାଏ । ପତ୍ର ୩'' - ୮'' ପର୍ଯ୍ୟନ୍ତ ଲମ୍ବ ଅଟେ ଧଳାଫୁଲ ଗୁଛରେ ବାହାରେ । ଏହା ସବୁସ୍ଥାନରେ ପ୍ରାୟ ଦେଖାଯାଏ । ଏହାର ଔଷଧୀୟ ଗୁଣ ସର୍ବ ବିଦୀତ । ପତ୍ର, ଛାଲି ଓ ପୁଷ୍ପ ଆଦି ଔଷଧ ରୂପେ ପ୍ରଯୁକ୍ତ ହୁଏ ।

ଏହା କାଶ, ରକ୍ତ ପିତ୍ତ ନାଶକ, କଫ ନିଷ୍କାସକ, କଫ ନିବାରକ ତଥା ଜ୍ୱରଯୁକ୍ତ କଫ ଶ୍ୱାସ ଏବଂ କ୍ଷୟ ରୋଗକୁ ନଷ୍ଟ କରେ । କେବଳ ଆୟୁର୍ବେଦ

ନୁହେଁ, ହୋମିଓପ୍ୟାଥି ଓ ୟୁନାନୀରେ ମଧ ବାସଙ୍ଗର ଔଷଧୀୟ ଗୁଣକୁ ପ୍ରଶଂସା କରାଯାଇଛି ।

କାଶ ପାଇଁ ବାସଙ୍ଗର ପତ୍ରର ରସକୁ ମଧୁ ସହିତ ମିଶାଇ ସକାଳେ ସଂଧ୍ୟାରେ ସେବନ କରାଗଲେ ଶିଘ୍ର ଅରୋଗ୍ୟ ହୁଏ ।

## ୩୧. ବଉଳ (MIMUSOP SALINGI)

ଏହା ଏକ ମଧମ ଧରଣର ଗଛ ଭାବେ ପରିଗଣିତ ହୋଇଥାଏ । ଏହାର ପତ୍ରରେ ଏକ ପ୍ରକାର ଗୁଣ ଅଛି ରସ ବଡ଼ ଉଗ୍ର । ଫୁଲ ଗୁଡିକ ସୁବାସିତ ଅଟେ । ଫଳ କଷାୟ ରସରେ ପୂର୍ଣ୍ଣ । ଏହା ଏତେ ଉପକାରୀ ଯେ ଦାନ୍ତ ହଲିବା ବନ୍ଦ କରିଦିଏ । ଏବଂ ଦାନ୍ତମୂଳକୁ ଏତେ ଶକ୍ତ କରିଦିଏ ଯେ ବ୍ୟବହାରକାରୀ ବିସ୍ମିତ ହୁଏ । ଏହି ବୃକ୍ଷ ପ୍ରାୟ ସବୁସ୍ଥାନରେ ଦେଖାଯାଏ । ମନ୍ଦିର, ପୁଷ୍କରଣୀ କୂଳରେ ଏହା ଲଗାଯାଇ ଥାଏ । ଅନେକ ସମୟରେ ଏହାକୁ ଲୋକମାନେ ପୂଜା କରିଥାନ୍ତି ।

ଏହାର ଛାଲି, ପତ୍ର, ଫଳ ଓ ଚେର ମଧ ଔଷଧ ରୂପେ ବ୍ୟବହାର ହୋଇଥାଏ ।

ଏହା କଟୁଯୁକ୍ତ କଷାୟରସ, ଗୁରୁପାକ, ଦନ୍ତମୂଳର ହିତ କର । କୃମି ମୁଖକ୍ଷତ, ଦନ୍ତରୋଗ, ଯାବତୀୟ ପ୍ରକାର ତ୍ରୁଣଘା, ବ୍ରଣ ଓ ଶୀର ରୋଗ ନିବାରକ ଅଟେ । କଞ୍ଚା ବଉଳ କୋଳିକୁ ଚୋବାଇଲେ କିମ୍ବା ଏଥିରେ ଦାନ୍ତ ଘସିଲେ ହଲିବା ଦାନ୍ତ ବଜ୍ରପରି କଠିନ ହୋଇଯାଏ ଏବଂ ବଉଳ ଦାନ୍ତକାଠିରେ ଦାନ୍ତ ଘସିଲେ ଦନ୍ତ ରୋଗ ପ୍ରାୟ ହୁଏ ନାହିଁ । ତା ଛଡା ବଉଳ କୋଳିର ମଞ୍ଜିକୁ ଭାଙ୍ଗି ତା ମଧ୍ୟରେ ଥିବା ଶସକୁ ବାଟି ସର୍ପାଘାତ କ୍ଷତରେ ଲଗାଇଲେ ସର୍ପ ବିଷ ବିନିଷ୍ଟ ହୋଇଥାଏ ।

## ୩୨. ବରୁଣ (KAPARIS TRIFOLIA)

ଏହା ବଉଳ ଗଛପରି ମଧ ଏକ ମଧମ ଧରଣର୍ ବୃକ୍ଷ । ଏହାର ପତ୍ର ଗୁଡିକ ପ୍ରାୟ ଶିମିଳୀ ପତ୍ର ସଦୃଶ । ଫଳ କାଗଜି ଲେମ୍ବୁ ପରି ଗୋଲ ଗୋଲ ଓ ଟାଣୁଆ ଅଟେ । ପାଚିଲେ ମହାକାଳ ଫଳ ପରି ଲାଲ ଦିଶେ । ଏହା ଜଳାଧାର କିମ୍ବା ଝରଣା, ନିକଟରେ ଉଠିଥାଏ । ପୂର୍ବେ ଲୋକମାନେ କୂପ ଖୋଳିବାକୁ

ଯାଉଥିବା ବେଳେ ଏହି ବୃକ୍ଷକୁ ଦେଖି ଜଳାଧାର ନିରୂପଣ କରୁଥିଲେ । ଏହି ବୃକ୍ଷର ଔଷଧୀୟ ଗୁଣ ଥିବାର ଶାସ୍ତ୍ର ପ୍ରମାଣ କରିଛି । ହିନ୍ଦୁମାନେ ମଧ୍ୟ ଏହି ବୃକ୍ଷକୁ ପୂଜା ଅର୍ଚ୍ଚନା କରିଥାନ୍ତି ।

ଏହି ବୃକ୍ଷର ଛାଲି ଚେ଼ର ଓ ପତ୍ର ଔଷଧ ରୂପେ ଭିନ୍ନ ଭିନ୍ନ ଅନୁପାନରେ ଭିନ୍ନ ଭିନ୍ନ ରୋଗ ଉପଶମ ପାଇଁ ବ୍ୟବହାର କରାଯାଇ ଥାଏ ।

ବରୁଣ କଟୁଯୁକ୍ତ ମିଶ୍ରିତ ରସ, ଲଘୁପାକ, ସ୍ନିଗ୍ଧ, ଉଷ୍ଣବୀର୍ଯ୍ୟ ମୂତ୍ର ନିଗମନ କାରକ, ଅଗ୍ନିବିର୍ଦ୍ଧକ ଏବଂ ବାୟୁ, କଫଦୋଷ, କୃମି, ଗୁଳ୍ମ,ରକ୍ତ ବିକୃତି, ବାତ ରକ୍ତ, କୁଷ୍ଠ, ମୂତ୍ର କୃଚ୍ଛ୍ର ପ୍ରଭୃତି ରୋଗ ନିବାରକ ।

## ୩୩. ବେଲ (ARGAL MARMALES)

ଏହା ଏକ ମଧ୍ୟମ ଧରଣର ବୃକ୍ଷ । ସବତ୍ର ଦେଖାଯାଏ । ଏହା କଣ୍ଟକ ପୂର୍ଣ୍ଣ ବୃକ୍ଷ । ଏହାର ପତ୍ର ତ୍ରୀଶାଖା ବିଶିଷ୍ଟ । ଫଳ ଗୋଲ ଓ ବଡ । ଉପରିଭାଗ ବହୁତ କଠିନ ଓ ମଧ୍ୟସ୍ଥିତ ଶସ, ସ୍ୱାଦ ଓ ସୁଗନ୍ଧ ଯୁକ୍ତ । ଏହା ଏକ ଦେବ ତୁଲ୍ୟ ଏବଂ ମହା ଉପକାରୀ ଗଛ । ଏଣୁ ଏହାର କାଷ୍ଠକୁ ଜାଳେଣୀ ରୂପେ ବ୍ୟବହାର କରିବା ପାଇଁ ଶାସ୍ତ୍ରରେ ନିଷେଧ କରାଯାଇଛି । ଏହା ଫଳ କଞ୍ଚା ଅବସ୍ଥାରେ ଯେତିକି ଉପକାରୀ ପାଚି଼ଲେ ମଧ୍ୟ ସେହିପରି ଉପକାରୀ । ସାଧାରଣତ ଏହାର ପତ୍ର, ଫଳ, ଛାଲି ଔଷଧ ପାଇଁ ବ୍ୟବହାର ହୋଇଥାଏ ।

ବେଲ ପତ୍ର ଅଳ୍ପ କଟୁରସ, ପାଚ଼କ, ଅଗ୍ନି ବର୍ଦ୍ଧକ, କାନ୍ତି ବୃଦ୍ଧିକର ରକ୍ତ ଶୋଧକ ଓ ପ୍ରଫୁଲ୍ଲତା କାରକ ଏବଂ ଜ୍ୱର, କାଶ, କୃମି, ହୃଦରୋଗ, କାମଳ, ଶୋଥ, ଅଜୀର୍ଣ୍ଣ, ପାଣ୍ଡୁ, ଯକୃତ, ପ୍ଲୀହା, ଶୂଳ ଓ ଅତିସାର ଆଦି ରୋଗର ବିନାଶକ ଅଟେ । କଞ୍ଚା ବେଲ କଷାୟ ରସ, ଉଷ୍ଣବୀର୍ଯ୍ୟ, ପାଚ଼କ, ମଳରୋଧକ ଅଟେ ପାଚି଼ଲା ବେଲ ମଧୁର ରସ, ଶୀତଳ, ତୃପ୍ତିପ୍ରଦ, ଗୁରୁପାକ, ଶୁକ୍ରବର୍ଦ୍ଧକ ଏବଂ ଅତିସାର, ଉନ୍ମାଦ, ଶୂଳ,ଶୁକ୍ରଦୋଷ ଓ ଅଜୀର୍ଣ୍ଣ ନିବାରକ ଅଟେ । ଆୟୁର୍ବେଦ ବ୍ୟତିତ, ହୋମିଓ ପ୍ୟାଥି ଓ ୟୁନାନୀରେ ବେଲକୁ ମଧ୍ୟ ଔଷଧୀୟ ମାନ୍ୟତା ଦିଆଯାଇଛି ।

## ୩୪. ବାଇଡଙ୍କ (MUCUNA PRURITA)

ଏହା ଶିମ୍ବ ଗଛ ସଦୃଶ ଏକ ବୃହତ ଲତା ଯାତୀୟ ଉଦ୍ଭିଦ । ବଡ ବଡ

ଗଛମାନଙ୍କୁ ଏହା ଆଶ୍ରା କରି ମାଡିଥାଏ । ପତ୍ର ଶିମ୍ବ ପତ୍ର କରି ଏବଂ ଫଳ ଶିମ୍ବ ଫଳ ପରି ପେଛା ହୋଇ ଝୁଲିଥାଏ । ଫଳ ଗୁଡିକ ଉପରେ ସାଁବାଳୁଆ ଲୋମ ପରି ଆଂଶୁ ଥାଏ । ଏହି ଆଂଶୁ ବେଳେ ବେଳେ ପବନରେ ଉଡିଥାଏ ଏବଂ ମନୁଷ୍ୟ ଦେହରେ ଲାଗିଲେ ପ୍ରବଳ ଗଲୁକରେ ଓ ସେ ସ୍ଥାନ ଫୁଲିଯାଏ । ଏହାର ମଞ୍ଜି ଔଷଧ ରୂପେ ବ୍ୟବହୃତ ହୁଏ । ରତିଶକ୍ତି ବୃଦ୍ଧି ପାଇଁ ଏଥିରୁ ପ୍ରସ୍ତୁତ ଔଷଧ ସର୍ବୋତ୍କୃଷ୍ଟ ଅଟେ ।

ବାଇଡଙ୍କ ଅଛ ତିକ୍ତ ରସ, ଗୁରୁପାକ, ସୁସ୍ୱାଦୁ ଓ ରତିଶକ୍ତି ବୃଦ୍ଧି କାରକ, ଶୁକ୍ର ବର୍ଦ୍ଧନ ଶୀଳ, ରକ୍ତ ହୀନତା, ରତି ଶକ୍ତି ହୀନତା, ବାତ, ପିତ୍ତ, ବ୍ରଣ, କ୍ଷତ, କ୍ଷୟ, ସ୍ତନ ରୋଗ, ବାର୍ଦ୍ଧକ୍ୟ ଓ କେଶ ପାଚିବା ପ୍ରଭୃତିର ନିବାରକ ଅଟେ ।

- ବାଇଡଙ୍କ ମଞ୍ଜିର ଚୂର୍ଣ୍ଣକୁ ମହୁ ସହିତ ସେବନ କଲେ ସ୍ତ୍ରୀ ମାନଙ୍କ ପ୍ରଦର ରୋଗ ଆରୋଗ୍ୟ ହୁଏ ।
- ଏହାର ମଞ୍ଜିକୁ ବାଟି ମହୁ ସହିତ ପ୍ରତ୍ୟେକ ଦୁଇବେଳା ସେବନ କଲେ ସମସ୍ତ ପ୍ରକାର ଚର୍ମରୋଗ ବିନିଷ୍ଟ ହୁଏ ।
- ଗଛର ମୂଳକୁ ଶିଝାଇ ମହୁ ସହିତ ଅଧଘଣ୍ଟା ଅନ୍ତରରେ ୩ଥର ପାନ କରାଇଲେ ସମସ୍ତ ପ୍ରକାର ଝାଡା ଏପରିକି ହଇଜା ମଧ୍ୟ ନିବାରିତ ହୁଏ ।
- ଏହାର ମଞ୍ଜିକୁ ଜଳରେ ଘୋରି ଲଗାଇଲେ ବିଷାକ୍ତ କୀଟ ଦଂଶନ କରିଥିବା ଯନ୍ତ୍ରଣା ଉପଶମ ହୁଏ ।
- ବାଇଡଙ୍କ ମଞ୍ଜି ଚୂର୍ଣ୍ଣ ସହିତ କିଛିତ ମିଶ୍ରି ଗୁଣ୍ଡା ମିଶାଇ ସିଝିଥିବା ଗାଇ ଦୁଧରେ ଗୋଳି ସେବନ କଲେ କାମ ଶକ୍ତ ପ୍ରବଳ ଭାବେ ଜନ୍ମେ ।
- ଅଶ୍ୱଗନ୍ଧା ଚୂର୍ଣ୍ଣ ସହିତ ବାଇଡଙ୍କ ଚୂର୍ଣ୍ଣ ଓ ମିଶ୍ରି ଗୁଣ୍ଡା ମିଶାଇ ସିଦ୍ଧ ଗାଇ ଦୁଧରେ ଗୋଳି ସେବନ କଲେ ଉତ୍କୃଷ୍ଟ ବାଜୀ କରଣ ହୁଏ । ଏଥିରେ ପୁରୁଷର ଅଶ୍ୱତୁଲ୍ୟ ଶକ୍ତି ଜନ୍ମେ ।

## ୩୫. ବାଡି ଅଁଏଳା (PHYLLANTHUS NIRURI)

ଏହା ଏକ ପ୍ରକାର କ୍ଷୁଦ୍ର ଗଛ ଭାବରେ ଗଣ୍ୟ ଅଟେ । ଏହାର ଉଚ୍ଚ ପ୍ରାୟ ଫୁଟେ ଦୁଇଫୁଟ ଅଟେ । ପତ୍ର ତେନ୍ତୁଳି ପତ୍ର ପରି । ପତ୍ର ଗୁଡିକର ତଳେ ଥିବା

ତେମରେ ଫଳ ସବୁ ଧାଡି ଧାଡି ହୋଇ ଓହଳି ଥାଏ । ଶ୍ୱେତ ଓ ପୀତ ଭେଦରେ ଏହା ଦୁଇ ପ୍ରକାର ଦେଖାଯାଏ । ସବୁ ସ୍ଥାନରେ ମଧ ଦୃଷ୍ଟି ଗୋଚର ହୁଏ । ପୀତ ଅପେକ୍ଷା ଶ୍ୱେତ ବାଡି ଅଏଁଳାର ଗୁଣ ଉତ୍କୃଷ୍ଟ ।

ଏହା ସ୍ନିଗଧ, ଶୀତ ବୀର୍ଯ୍ୟୋ, ମଧୁର ରସ, ମଳ ରୋଧକ, ମଳ କାରକ, ଓ କାନ୍ତି ପ୍ରଦ । ଶିଶୁ ରୋଗ, ପିହୁଳା, ଜ୍ୱର, ଅପସ୍ମାର, ବାୟୁ, ଉନ୍ମାଦ, କ୍ଷତ ଓ ବହୁମୂତ୍ର ଆଦିରୋଗ ନିବାରକ ।

- ବାଡି ଅଏଁଳା ଗଛକୁ ବାଟି କଟା ଘାରେ ଲେପି ପଟି ବାନ୍ଧି ଦେଲେ ତାହା ଶ୍ରୀଘ୍ର ଶୁଖିଯାଏ ।
- ଏହାର ପତ୍ରକୁ ହଳଦୀ ସହିତ ବାଟି ପିଲାଙ୍କୁ ଲଗାଇ ଦେଲେ ସେମାନଙ୍କ ଚ଼ର୍ମରୋଗ ହୁଏନାହିଁ ।
- ବଚ଼ ଓ ବାଡି ଅଏଁଳା ଏକତ୍ର ବାଟି ତିନିଥର ସେବନ କଲେ ସ୍ତ୍ରୀମାନଙ୍କର ରକ୍ତୋରୁଦ୍ଧ ରୋଗ ଭଲ ହୁଏ ।
- ବାୟୁ ଓ ଶୂଳ ପ୍ରକୋପରେ ଦାରୁଣ ଯନ୍ତ୍ରଣା ଲଭୁଥିବା ବ୍ୟକ୍ତିକୁ ଏହି ଗଛ ସଙ୍ଗରେ ଶୁଣ୍ଠୀ ଓ ଗୋଲ ମରିଚ଼ ମିଶାଇ ଜଳରେ ସିଝାଇ ପାନ କରାଇଲେ ଶୂଳ ପୀଡା ଶିଘ୍ର ନିବାରିତ ହୁଏ ।

## ୩୬. ବରଗଛ (FICUS BENGALENSIS)

ଏହା ସର୍ବ ବିଦିତ ମହାଦ୍ରୁମ ଛୟାପ୍ରଦ ଓ ଯଥେଷ୍ଟ ଉପକାରୀ ବୃକ୍ଷ ।

ବର କଷାୟ ରସ, ଶୀତଳ, ଧାରକ, ଗୁରୁପାକ ରସାୟନ କାନ୍ତି ପ୍ରଦ ଓ ସ୍ତମ୍ଭନ କାରକ ଏବଂ ମେହ ପ୍ରମେହ, ଉପଦଂଶ ବୀର୍ଯ୍ୟଦୋଷ, ଧାତୁ ଦୋଷ, ପିତ, କଫ, ଦାହ, ପ୍ରଦର, ଯୋନିରୋଗ, ବ୍ରଣ, କ୍ଷତ, ବାଗୀ, କାଖଗୋଲି ଓ ଅତିସାର ପ୍ରଭୃତି ରୋଗ ନିବାରକ । ଏହାର ଛାଲି, ଖୀର ଓ ଓହଳ ଔଷଧ ରୂପେ ବ୍ୟବହାର ହୋଇଥାଏ ।

- ବରକ୍ଷୀର ସଙ୍ଗରେ ମିଶ୍ରି କିମ୍ୱା ଚ଼ିନି ମିଶାଇ ପ୍ରତ୍ୟହ ସେବନ କଲେ ଶୁକ୍ର ତାରଲ୍ୟ ଦୋଷ ନିବାରିତ ହୁଏ ଏବଂ ଅତ୍ୟନ୍ତ ଶୁକ୍ର ବୃଦ୍ଧି ଘଟାଏ, ଆଶ୍ଚର୍ଯ୍ୟ ଭାବେ ରତି ଶକ୍ତିବୃଦ୍ଧି ପାଏ ।
- ବରକ୍ଷୀର ସାଦା କାଗଜ ଉପରେ ବୋଳି କାଖଗୋଲି ଓ ବ୍ରଣ, ବଥ

ଉପରେ ଲଗାଇଲେ ତାହା ପାଚି ନଯାଇ ବସି ଯାଏ ।

- ବରକ୍ଷୀର ସହିତ ହଳଦୀ ରସ କିମ୍ବା ହଳଦୀ ଗୁଣ୍ଡ ମିଶାଇ ସାତ ଦିନ ସେବନ କଲେ ସବୁ ପ୍ରକାର ମେହ ପ୍ରମେହ ଓ ବହୁ ମୂତ୍ର ରୋଗ ଆଦି ଭଲ ହୋଇଯାଏ ।
- ବର ଛାଲିକୁ ଜଳରେ ସିଝାଇ ସେହି ଜଳକୁ କୁଳି କଲେ ମୁଖ ଭିତରର କ୍ଷତ ଭଲ ହୋଇଯାଏ ।
- ଗାଇ ଦହି ସହିତ ବର ଓହଳକୁ ବାଟି ଖାଇଲେ ଦେହ ପୁଷ୍ଟ ହୁଏ । ବଳ ବଢେ ଓ ସ୍ମରଣ ଶକ୍ତି ବଢେ । ଯେ କୌଣସି ଅତିସାର ରୋଗରେ ଏହା ମଧ ପ୍ରୟୋଗ କରାଯାଇ ପାରେ

## ୩୭. ଭୂଇଁ କଖାରୁ (IPOMOEA DIGITATA)

ଏହା ଏକ ପ୍ରକାର ଲତା ଜାତୀୟ ଉଦ୍ଭିଦ । ଏହାର ମୂଳରେ ଏକ ବୃହତ କନ୍ଦ ଥାଏ । ମାଟି ଖୋଳିଲେ ଦେଶୀ ଆଳୁ ପ୍ରାୟ ଯେଉଁ ବୃହତ ଆକାର କନ୍ଦ ପାଇବାକୁ ହୁଏ, ତାହାକୁ ଭୂଇଁ କଖାରୁ କୁହାଯାଏ । ଏହାର ପତ୍ର ଚିକ୍‌ଣ ଏବଂ ପାଞ୍ଚ ଆଙ୍ଗୁଳିଆ ପତ୍ର ପରି ଶିରା ଶିରା ହୋଇଥାଏ । ଏହାର ଫୁଲ ଧଳା ଓ ଗୋଲାପି ବର୍ଣ୍ଣରେ ଅତ୍ୟନ୍ତ ସୁନ୍ଦର ଦିଶେ । ଏହାର ମୂଳ ସାଧାରଣତ ଔଷଧି ରୂପେ ବ୍ୟବହାର ହୋଇଥାଏ ।

ଏହା ମଧୁର ରସ, ସ୍ନିଗଧ, ଶୀତଳ, ରସାୟନ, ସ୍ତନ୍ୟବର୍ଦ୍ଧକ, ବୀର୍ଯ୍ୟ ବର୍ଦ୍ଧକ, ବର୍ଣ୍ଣ ବର୍ଦ୍ଧକ, ରକ୍ତ ଶୋଧକ, ପୁଷ୍ଟିକର, ବାର୍ଦ୍ଧକ୍ୟ ନିବାରକ, ସ୍ୱର ପରିଷ୍କାରକ, ବାୟୁ, ପିତ୍ତଦୋଷ, ଶୁକ୍ର ହୀନତା, ଧ୍ୱଜ ଭଙ୍ଗତା ଆଦି ଆରୋଗ୍ୟ କାରକ ଅଟେ ।

ଭୂଇଁ କଖାରୁ ଦୁଗ୍ଧ ସହିତ ପ୍ରସବ ପରେ ମହିଳା ମାନଙ୍କୁ ସେବନ କରାଇଲେ ସ୍ୱାସ୍ଥ୍ୟ ଓ କ୍ଷୀର ବୃଦ୍ଧି ଘଟେ । ଭୂଇଁ କଖାରୁ ଶୁଖିଲା ଚୂର୍ଣ୍ଣ ମହୁ ସହିତ ସେବନ କଲେ ଜ୍ୱର, ବାନ୍ତି ଆରୋଗ୍ୟ ହୁଏ ।

## ୩୮. ଭୂଇଁ ନିମ୍ବ (ANDROGRAPHISPARICULAT)

ଏହା ଏକ ପ୍ରକାର ଗୁଳ୍ମ ଜାତୀୟ ଉଦ୍ଭିଦ ଅଟେ । ଏହା ଦୁଇ ଫୁଟରୁ ଅଧିକ ଉଚ୍ଚ ହୁଏ ନାହିଁ । ପତ୍ର ଠିକ ନିମ୍ବପତ୍ର ପରି ଓ କୋମଳ ଅଟେ । ଦୁଇ ଜାତିର ଭୂଇଁ

ନିମ୍ବ ଦେଖାଯାଏ । ଗୋଟିଏ ଗୋଲ ଫଳ ଯୁକ୍ତ ଓ ଅନ୍ୟଟି ଲମ୍ବା ଫଳ ଯୁକ୍ତ । ଏହା ଅତିଶୟ ତିକ୍ତ ରସ ଯୁକ୍ତ ଅଧିକାଂଶ ଏହାକୁ ଚିରେଇତା ବୋଲି କହିଥାନ୍ତି ଯଦିଓ ଏହା ଚିରାଇତା ନୁହେଁ ।

ଭୂଇଁ ନିମ୍ବ ଅତ୍ୟନ୍ତ ତିକ୍ତରସ, ଶୀତଳ, ଲଘୁପାକ ଓ ବର୍ଣ୍ଣ କାରକ । ଏବଂ ଜ୍ୱର, କାସ, କଫ, ବାୟୁ, ଶୂଳ, ଶୋଥ, କଣ୍ଡୁ, ବ୍ରଣ, କୃମି, କ୍ଷତ, କୁଷ୍ଠ ଆଦିର ନିବାରକ ଅଟେ ।

- ଏହି ଗଛର ପତ୍ର ହଳଦୀ ସହିତ ବାଟି ପ୍ରଲେପ ଦେଲେ ସମସ୍ତ ପ୍ରକାର ଚର୍ମରୋଗ ବିନିଷ୍ଟ ହୁଏ । ଘା ମଧ୍ୟ ଅରୋଗ୍ୟ ହୁଏ ।
- ଭୂଇଁ ନିମ୍ବକୁ ସୁଖାଇ ଚୂର୍ଣ୍ଣକରି ଗରମ ଜଳ ସହିତ ସେବନ କଲେ ସମସ୍ତ ପ୍ରକାର ଜ୍ୱର ମଧ୍ୟ ଉପଶମ ହୁଏ ।
- ପତ୍ରର ରସକୁ ମହୁ ସହିତ ସେବନ କଲେ କୃମି ବିନାଶ ହୁଅନ୍ତି ।

## ୩୯. ମୁଚୁକୁନ୍ଦ

## (PETROSPERMUM SUDER FOLIUM)

ଏହା ଏକ ବଡ ଗଛ । ପତ୍ର ଗୁଡିକ ବଡ । ଫୁଲସବୁ ଲମ୍ବା ଲମ୍ବା ହୋଇଥାଏ ଏବଂ ସୁଗନ୍ଧ ଯୁକ୍ତ । ଏହା ଦେଶର ସବୁ ସ୍ଥାନରେ ଦେଖାଯାଏ ନାହିଁ । ଏହାର ଫୁଲ ବିଶେଷତ ରାତିରେ ଫୁଟେ ଏବଂ ଖୁବ ବାସନା ହୁଏ । ଏହାର ଔଷଧୀୟ ଗୁଣ ଅସୀମ ଅଟେ । ଫୁଲ, ପତ୍ର ଏବଂ ଛାଲି ଔଷଧୀ ରୂପେ ପ୍ରଯୁକ୍ତ ହୋଇଥାଏ ।

ଏହା କଟୁ ମିଶ୍ରିତ ତିକ୍ତ ରସ, କଫ, କାସ, ବ୍ରଣ, ଶୁଷ୍କ କଣ୍ଡୁ, କଣ୍ଠ ଦୋଷ, ଜ୍ୱର, ଶୋଥ ଓ ଯାବତୀୟ ପ୍ରକାର ଚର୍ମ ରୋଗ ନିବାରକ ଅଟେ । ଏହାର ଫୁଲ ଶିର ବ୍ୟଥା, ରକ୍ତ ଦୋଷ, ବିଷ ଦୋଷ, ପିତ୍ତ ଦୋଷ, ଉପଶମ କାରକ । ଗଛର ଛାଲି କୁ ଜଳରେ ସିଝାଇ ସେହି ଜଳରେ ସ୍ନାନ କଲେ ଚର୍ମ ରୋଗ ବିନାଶ ହୁଏ । ପତ୍ରର ରସକୁ ମହୁ ମିଶାଇ ସେବନ କଲେ ଜ୍ୱର ଶୋଥ, ଉଦରସ୍ଥ ବିଷ, ଦେହର କଣ୍ଡୁ ପିତ୍ତ ପ୍ରକୋପ ଆଦି ରୋଗ ନିବାରିତ ହୁଏ ।

## ୪୦. ମେଥୀ

## (TRIGONELLAFOENUMGRAECUM)

ଏହା ଏକ ପ୍ରକାର ଶାକ ଜାତୀୟ ଉଦ୍ଭିଦ । ଉଚ୍ଚରେ ଖୁବ ବଢିଲେ ଏହା ଏକ ଫୁଟରୁ ଅଧିକ ହୁଏ ନାହିଁ । ଏହା ଶାକ ରୂପେ ଆହାର ହୋଇଥାଏ ଓ ଫଳ

ମେଥି ରୂପେ ପରିଚିତ । ଏହାର ଔଷଧୀୟ ଗୁଣ ଅନେକ ।

ମେଥୀ କଟୁ ମିଶ୍ରିତ ତିକ୍ତ ରସ । ପାଚକ ଉଷ୍ଣବୀର୍ଯ୍ୟ । ଅଗ୍ନି ବର୍ଦ୍ଧକ, ରୁଚିକର,ବପୁକାରକ ଓ ରକ୍ତ ପିତ୍ତ, ଜ୍ୱର, ବାୟୁ ବାତ, ଶ୍ଳେଷା ଓ ସମସ୍ତ ପ୍ରକାର ସ୍ତ୍ରୀ ରୋଗର ପ୍ରଧାନ ଉପକାରୀ ।

- ମେଥିକୁ ଜଳରେ ଭେଦାଇ ବାଟି ସେବନ କଲେ ସ୍ତ୍ରୀ ମାନଙ୍କର ଜରାୟୁ ଦୋଷ, ଯୋନି ଦୋଷ, ବାତ ଦୋଷ ଆଦି ନିବାରିତ ହୁଏ ଓ କାନ୍ତି ବର୍ଦ୍ଧିତ ହୁଏ ।
- ଭଜା ମେଥୀଗୁଣ୍ଡାରେ ମିଶ୍ରି ଗୁଣ୍ଡା ମିଶାଇ ପ୍ରତ୍ୟେହ ସକାଳୁ ଖାଇ ଶୀତଳ ଜଳ ପାନ କଲେ ସ୍ତ୍ରୀ ମାନଙ୍କର ଦେହରୁ ସମସ୍ତ ରୋଗ ଦୂର ହୁଏ । କୁମାରୀମାନେ ରଜୋବତୀ ହୁଅନ୍ତି ।

ପ୍ରତ୍ୟେହ ଭଜା ମେଥୀଗୁଣ୍ଡ ଖାଇ କଞ୍ଚା ଦୁଧ ପାନ କଲେ କି ସ୍ତ୍ରୀ କି ପୁରୁଷ ସମସ୍ତେ ପୁଷ୍ଟ ହୁଅନ୍ତି । ସ୍ତ୍ରୀ ମାନଙ୍କର ଜରାୟୁ ଦୋଷ ନିବାରିତ ହେବା ସହିତ ପୁରୁଷମାନଙ୍କର କାମ ଶକ୍ତି ଆଶ୍ଚର୍ଯ୍ୟ ଭାବେ ବୃଦ୍ଧି ପାଏ । ଧାତୁ ଶୁଦ୍ଧ ଓ ସ୍ଥିର ହୁଏ ।

## ୪୧. ଯଷ୍ଟିମଧୁ (GLYCYRRIZA GLABRA)

ଏହା ଏକ କ୍ଷୁଦ୍ର ଦିର୍ଘାୟୁ ବୃକ୍ଷ । ଏହାର ଉଚ୍ଚତା ସାଧାରଣତ ଦେଢ ମିଟରରୁ ୨ ମିଟର ପର୍ଯ୍ୟନ୍ତ ହୋଇଥାଏ । ଏହାର କାଣ୍ଡ ମୂଳ ମଧୁର ହୋଇଥିବାରୁ ଏହାକୁ ଯଷ୍ଟି ମଧୁ ବୋଲି କୁହାଯାଇଛି । ଏହି ବୃକ୍ଷ ଆରବ, ତୁର୍କୀସ୍ଥାନ ଆଫଗାନିସ୍ଥାନରୁ ଆସି ଭାରତର ବଜାରରେ ବିକ୍ରୀ ହେଉଥିଲା । ଏବେ ଏହା ହିମାଳୟର ତରାଇ ଅଞ୍ଚଳ ଓ ମସୁରୀ, ଡେରାଡୁନ ଆଦିରେ ଉତ୍ପନ କରାଯାଉଛି । ଏହି ବୃକ୍ଷର ଭୂମିଗତ କାଣ୍ଡ ତଥା ଚେ଼ରକୁ ଶୁଖାଇ ଛାଲିକୁ କାଢି ଅଥବା ଛାଲି ସହିତ ଅଙ୍ଗ ମଧ ଔଷଧ ରୂପେ ବ୍ୟବହାର ହୁଏ ।

ଅସିଲି ଯଷ୍ଟିମଧୁର ଭିତର ଅଂଶ ହଳଦୀଆ ତନ୍ତୁ ପୂର୍ଣ୍ଣ ଏବଂ ହାଲୁକା ଗନ୍ଧଯୁକ୍ତ ଥାଏ । ତାହା ଚେ଼ର ମଧୁର ଥାଏ । ତାହା ଶୁଖିଗଲା ପରେ ଟିକିଏ ତିକ୍ତ ଏବଂ ଅମ୍ଳ ମିଶ୍ରିତ ସ୍ୱାଦ ହୁଏ । ବିଦେଶୀ ଆମଦାନୀ ଔଷଧ ମଧରେ ମିଶର ଦେଶର ଯଷ୍ଟିମଧୁ ଉତ୍ତମ ଅଟେ ।

ଯେପରି ଏଲୋପାଥିକ ଔଷଧର ଗୁଣ ସମାପ୍ତିର ନିର୍ଦ୍ଦିଷ୍ଟ ସମୟ ସୀମା ଥାଏ ସେହିପରି ଯଷ୍ଟିମଧୁ ସଂଗ୍ରହ ହେବା ଅବଧି ପରେ ଦୁଇବର୍ଷ ପର୍ଯ୍ୟନ୍ତ ଉପଯୋଗୀ ରହେ ।

ଏହା ମଧୁର ରସ, ବାତପିତ୍ତ ନାଶକ ହୋଇଥିବାରୁ ଅମ୍ଳରସ ଉତ୍ପାଦକ ଗ୍ରନ୍ଥି ଏବଂ ସ୍ନାୟୁ ସମୂହ ଉପରେ ଏହାର ପ୍ରଧାନ ପ୍ରଭାବ ପଡେ । ଏହା ବମନ ନାଶକ ଏବଂ ତୃଷ୍ଣାହାର ଅଟେ । ସମସ୍ତ ଆୟୁର୍ବେଦ ବିଦ୍ୱାନ ଏହାକୁ ପାକସ୍ଥଳୀ ଅମ୍ଳତା କମ କରିବାରେ ସହାୟକ ତଥା ପାକସ୍ଥଳୀର କ୍ଷତ ପରିପୂରଣ କରିବାରେ ସର୍ବାଧିକ ଉପଯୋଗୀ କହନ୍ତି । ଏହା ଅତିରିକ୍ତ ଜୀବନ ନିର୍ବାହ ଯୋଗ୍ୟ ରସାୟନ ଏବଂ ବଳବର୍ଦ୍ଧକ ଔଷଧ ମଧ୍ୟ ଅଟେ ।

ରକ୍ତ ବାନ୍ତିରେ ଦୁଧ ସହିତ କିମ୍ବା ମଧୁ ସହିତ ଯଷ୍ଟିମଧୁ ଚୂର୍ଣ୍ଣ ୧ ରୁ ୪ ମଶା ମାତ୍ରାରେ ଦେଲେ ଉପଶମ ମିଳେ । ହୁପି କଫରେ ମଧୁରେ ଚୂର୍ଣ୍ଣ ମିଶାଇ ନାକରେ ପକାଇଲେ କିମ୍ବା ଖାଇବାକୁ ଦେଲେ ଅରୋଗ୍ୟ ହୁଏ । ମୁଣ୍ଡ ରୋଗରେ ପୀଡା ନିବାରଣ ପାଇଁ ବୁଦ୍ଧି ବର୍ଦ୍ଧନ ପାଇଁ ଏନିମିଆ (ରକ୍ତହୀନତା), କାଶ, ଶ୍ୱାସ, ଯକ୍ଷ୍ମା, ବର୍ଣ୍ଣ ବିକାର ତଥା ଦୁର୍ବଳତାରେ ପୁଷ୍ଟିକାରକ ରୂପେ ଏହାର ପ୍ରୟୋଗ କରାଯାଏ ।

## ୪୨. ରାସ୍ନା (VANDA ROX BURGHI)

ଏହା ସ୍ୱତନ୍ତ୍ର କୌଣସି ବୃକ୍ଷ ନୁହେଁ ଲତା ଯାତୀୟ ଉଦ୍ଭିଦ ଅନ୍ୟ ଗଛରେ ବଂଶ ବୃଦ୍ଧି କରିଥାଏ । ଏହାର ମୂଳ ନାହିଁ । ଏଥିରେ ଅଳ୍ପ ଭାବରେ ସୁଗନ୍ଧ ଥାଏ । ବାତ ପ୍ରଭୃତି ରୋଗରେ ଏହା ଅତି ଉପକାରୀ । ରାସ୍ନା ତିକ୍ତରସ, ପାଚକ, ଦୀପକ, ଉଷ୍ଣବୀର୍ଯ୍ୟ, ଗୁରୁପାକ ଓ ବଳକର ଏବଂ କାଶ, ଶ୍ୱାସ, ଜ୍ୱର, କଫ, ଶୂଳ, ବାୟୁ, ଆମବାତ, ବାତ, ଆଦି ରୋଗମାନ ଉପଶମ ହୋଇଥାଏ । ଏହାର ପତ୍ର ଓ ଲତା ଔଷଧ ରୂପେ ବ୍ୟବହୃତ ହୁଏ ।

- ରାସ୍ନାର କ୍ୱାଥ ସହିତ ମହୁ ମିଶାଇ ସେବନ କରାଇଲେ ଦେହ ହାତ ଦରଜ, ଘୋଳାବିନ୍ଧା, ଶୂଳ ଓ ଜ୍ୱର ଆଦି ନିବାରିତ ହୁଏ ।
- ରାସ୍ନାକୁ ଜଳରେ ସିଦ୍ଧକରି ତାହାର ବାଷ୍ପ ଗ୍ରହଣ କରିଲେ ବାତ ଓ ଆମବାତ ନିବାରିତ ହୁଏ ।
- ରାସ୍ନା ଓ ଗୁଳୁଚି ସମାନ ଭାବରେ ଚୂର୍ଣ୍ଣକରି ରାଶିତେଲ ସଙ୍ଗରେ ରାନ୍ଧି

ତେଲକୁ ମାଲିସ କଲେ ହସ୍ତ ପାଦର ଜ୍ୱାଳା ନିବାରିତ ହୁଏ ।

- ରାସ୍ନା ଚୂର୍ଣ୍ଣ ଗରମ ଜଳ ସହିତ ସେବନ କଲେ ଦେହହାତ ଦରଜ ବାୟୁଦୋଷ, ଶୂଳ ଓ ସର୍ବାଙ୍ଗ ବିନ୍ଧା ନିବାରିତ ହୁଏ ।

## ୪୩. ଶତାବରୀ (ASPARAGUS RACEMOSUS)

ଶତାବରୀ ଗ୍ରୀଷ୍ମଋତୁର ମଧ୍ୟ ଭାଗରେ ପ୍ରଥମେ ଏକ କଣ୍ଟାପୂର୍ଣ୍ଣ କନ୍ଦଯୁକ୍ତ ଲତାରୂପେ ପ୍ରକଟ ହୁଏ । ମିଟରେ ଦେଢ଼ ମିଟର ଆଗକୁ ବଢ଼ି ଏକ ପଟେ ମୋଡି ବାଡ ରୂପରେ କିମ୍ବା କୌଣସି ବୃକ୍ଷର ଆଶ୍ରୟ ନେଇ ଉଚ୍ଚକୁ ଚଢ଼ିଥାଏ । ଏହା ବଙ୍କାବଙ୍କା କଣ୍ଟାଯୁକ୍ତ ଏଥିରେ ସୁଗନ୍ଧିତ ଛୋଟ ଛୋଟ ପୁଷ୍ପ ଥାଏ । ଏହା ଭାରତ ବର୍ଷର ସମସ୍ତ ଗରମ, ସମଶୀତୋଷ୍ଣ ଅଞ୍ଚଳରେ ତଥା ହିମାଳୟର ଚାରିହଜାର ଫୁଟ ଉଚ୍ଚସ୍ଥାନ ପର୍ଯ୍ୟନ୍ତ ମିଳେ । ଶତାବରୀର କନ୍ଦରୁ ଶହ ଶହ ମୂଳ ବାହାରନ୍ତି ଏହା ଆଙ୍ଗୁଳି ମୋଟ ଲମ୍ବ ଦେଢ଼ଫୁଟ ପର୍ଯ୍ୟନ୍ତ ଧୂସର, ହଳଦିଆ, ସ୍ୱାଦ ଟିକିଏ ମଧୁର ତଥା ପରେ ତିକ୍ତ ଲାଗେ । ଗୋଟିଏ ଲତା ତଳେ ଶହଶହ ଚେର ବାହାରନ୍ତି । ଏହି ସବୁ ଶ୍ୱେତ ମୂଳଗୁଚ୍ଛର ପ୍ରୟୋଗ ଚିକିତ୍ସା କାର୍ଯ୍ୟ ପାଇଁ ହୁଏ । ଏହାକୁ ଶୁଖାଇ ବଜାରରେ ଶତାବରୀ ନାମରେ ବିକ୍ରୟ ହୁଏ ।

ଏହା ଗୁରୁ, ଶୀତ, ତିକ୍ତ ରସାୟନ ଅଟେ । ଏହା ମେଦକୁ ବଢ଼ାଏ ଅଗ୍ନି ବର୍ଦ୍ଧକ ଅଟେ । ବାତ ପିତ୍ତ, ଶୋଥଫୁଲା ନିବାରକ ତଥା ଶୁକ୍ର ଦୌର୍ବଲ୍ୟକୁ ଦୂର କରେ । ବନୌଷଧି ଚନ୍ଦ୍ରୋଦୟ ଅନୁସାରେ ଶରୀରର ସମସ୍ତ ବାତ-ନାଡ଼ୀ ସଂସ୍ଥାନର କେନ୍ଦ୍ର ମସ୍ତିକ ଅଟେ । ଶତାବରୀ ଏହି ବାତ ସଂସ୍ଥାନ ଏବଂ ବାତ ଧାତୁକୁ ବଳ ପ୍ରଦାନ କରେ । ତଦ୍ୱାରା ମେଧା, ବୁଦ୍ଧି, ମନଃଶକ୍ତି ଏବଂ ଦେହର ଅଙ୍ଗ ପ୍ରତ୍ୟେଙ୍ଗ ସବୁ ସବଳ ହୁଅନ୍ତି । ସ୍ତ୍ରୀ ମାନଙ୍କ ପାଇଁ ଏହା ଉତ୍ତମ ରସାୟନ ଅଟେ । ସ୍ତନ୍ୟବୃଦ୍ଧି ତଥା ଦୁଧର ମାତ୍ରା ବଢ଼ାଇବା ପାଇଁ ଏହାର ପ୍ରୟୋଗ କରନ୍ତି ।

## ୪୪. ଶୁଣ୍ଠୀ (ZINGIBER OFFICINALE)

ଏହା ଏକ ସର୍ବ ପରିଚିତ ଔଷଧୀୟ ବସ୍ତୁ । ଶୁଷ୍କ ହୋଇଥିବାରୁ ଶୁଣ୍ଠୀ ଓ କଞ୍ଚା ଅବସ୍ଥାରେ ଅଦା ନାମରେ ପରିଚିତ । ଏହା ଏକବର୍ଷୀୟ ଉଦ୍ଭିଦ ୨-୪ ଫୁଟ ଉଚ୍ଚ ହୁଏ । ପତ୍ର ବାଉଁଶ ପତ୍ର ପରି । ଏହାର ମାଟିତଳେ ଥିବା ଭୌମିକ କାଣ୍ଡ ଔଷଧ ରୂପେ ବ୍ୟବହୃତ ହୁଏ । ଏହି କାଣ୍ଡକୁ ଶୁଖାଇବା ପ୍ରଣାଳୀ ଦୁଇ

ପ୍ରକାରର ପ୍ରଥମରେ ଖୁବ ଟାଣ ଖରାରେ ଓ ଦ୍ୱୀତୀୟରେ ବନ୍ଦ ସ୍ଥାନରେ କୃତ୍ରିମ ଉପାୟରେ ଶୁଖାଯାଏ । ଟାଣ ଖରାରେ ଶୁଖିଥିବା ଶୁଣ୍ଠୀ ଉତ୍ତମ ଗୁଣ ଯୁକ୍ତ ଅଟେ । ଏହା ଏକବର୍ଷ ପର୍ଯ୍ୟନ୍ତ ଔଷଧୀୟ ଗୁଣଯୁକ୍ତ ରହିପାରେ ।

ଶୁଣ୍ଠୀରେ ପ୍ରୋଟିୟୋଲିଟିକି ଇନ୍‌ଜାଇମସ୍ ପ୍ରଚୁର ଅଛି । ଏଥିଯୋଗୁ ଏହା ଜୀବନୀ ଶକ୍ତି ବର୍ଦ୍ଧକ ନାଡ଼ୀ ସଂସ୍ଥାନ ପାଇଁ ଉତ୍ତେଜକ ଏବଂ ବାତ ଶମକ ଔଷଧ ଅଟେ । ଏହା ଏକାଧାରାରେ କଫ ନାଶକ, ଶୂଳ ନିବାରକ, ପାଚ଼ନ ଶକ୍ତି ବୃଦ୍ଧି କାରକ । ବିଷମ ଜ୍ୱର ଶିଘ୍ର ଓହ୍ଲାଇ ଯାଏ । ସାଧାରଣ ଦୁର୍ବଳତାରେ ଏହା ବିଶେଷ ଲାଭକାରୀ ଅଟେ ।

ହୋମିଓପାଥି ଓ ୟୁନାନୀ ଚ଼ିକିତ୍ସା ଶାସ୍ତ୍ରରେ ଏହାର ପ୍ରୟୋଗ କରିବା ପାଇଁ ମଧ କୁହାଯାଇଛି ।

## ୪୫. ଶମୀ (PROSOPSIS SPECIGERA)

ଶମୀ ବୃକ୍ଷ ଦୁଇ ଜାତିର ଥାଏ ଛୋଟ ଓ ବଡ଼ । ଏହା ସର୍ବ ପରିଚ଼ିତ ଓ ଏକ କଣ୍ଟକ ପୂର୍ଣ୍ଣ ବୃକ୍ଷ । ବାବଲା ଗଛ ସଦୃଶ ଏହି କଣ୍ଟକ ପୂର୍ଣ୍ଣ ବୃକ୍ଷ ଅତୀବ ଉପକାରୀ ଏବଂ ଏହାର ଔଷଧୀୟଗୁଣ ପାଇଁ ଏହା ପ୍ରସିଦ୍ଧ ।

ଶମୀ କଟୁ ତିକ୍ତ ମିଶ୍ରିତ କଷାୟ ରସ । ରୁକ୍ଷ, ଲଘୁପାକ ଶୀତଳ ଓ କଫ, କାସ, ଶ୍ୱାସ, ଅର୍ଶ, ଅତିସାର, ରକ୍ତପିତ୍ତ ଓ କୁଷ୍ଠ ରୋଗ ପ୍ରଭୃତିର ଉପଶମ କାରକ ଅଟେ ।

ଏହାର ପତ୍ର ଛେଲି, ଓ ଚ଼େର ଔଷଧୀରୂପେ ବ୍ୟବହୃତ ହୁଏ । ଏହାର ପତ୍ରର ରସରେ ଗୁଗୁଳ ଚୂର୍ଣ୍ଣ ମିଶାଇ ଏକୋଇଶ ଦିନ ସେବନ କଲେ ବାତ ରକ୍ତ, ଅମ୍ଳ ପିତ୍ତ ବିକାର, କୁଷ୍ଠ ଆଦି ବିଭିନ୍ନ ପ୍ରକାର କ୍ଷତ ରୋଗ ଆରୋଗ୍ୟ ହୁଏ ।

- ଏହାର ପତ୍ରର ରସରେ ପିପ୍ପଳୀ ଚୂର୍ଣ୍ଣ ଓ ମହୁ ମିଶାଇ ସେବନ କଲେ କାସ ଓ କଫ ରୋଗ ନିବାରିତ ହୁଏ ।
- ଏହାର ଛାଲିର ରସରେ ମିଶ୍ରିଗୁଣ୍ଡ ମିଶାଇ ସେବନ କଲେ ମେହ ରକ୍ତ ପିତ୍ତ ଅର୍ଶ ରୋଗ ଭଲ ହୁଏ ।
- ଏହାର ଛାଲିକୁ ଏହି ପତ୍ରର ରସ ସହିତ ବାଟି ସେବନ କଲେ ଦେହର

ଯାବତୀୟ ପ୍ରକାର ଚର୍ମରୋଗ ଦୂର ହୋଇ ଦିନକୁ ଦିନ କାନ୍ତି ବର୍ଦ୍ଧିତ ହୁଏ ।

- ଏହାର ଚେରକୁ ଜଳରେ ସିଝାଇ ସେଥିରେ ଚିନି ମିଶାଇ ଉଷ୍ମ ଥାଉଁ ଥାଉଁ ପାନ କଲେ ଦେହର ଆଳସ୍ୟ ଦୂର ହୋଇ ଫୁର୍ତ୍ତିଲାଗେ ।

## ୪୬. ହରିଡ଼ା (TERMINALIA CHEBULA)

ଏହା ଏକ ଉଚ୍ଚ ବୃକ୍ଷ ଅଟେ ସାଧାରଣତଃ ରାଜ୍ୟର ଗଡ଼ଜାତ ଅଂଚଳରେ ଏହି ବୃକ୍ଷ ବହୁଳ ଗାବେ ଦେଖାଯାଏ । ସାଧାରଣ ଉଚ୍ଚତା ୫୦ ଫୁଟରୁ ୮୦ ଫୁଟ ଯାଏ ହୋଇଥାଏ । ଏହାର ଫଳକୁ ହରିଡ଼ା କିମ୍ବା ହରୀତକୀ କୁହାଯାଏ । ପ୍ରକାର ଭେଦରେ ହରିଡ଼ା ୭ ପ୍ରକାର ବିଜୟା, ରୋହିଣୀ, ପୂତନା, ଅମୃତା, ଅଭୟା, ଜୀବନ୍ତୀ ଓ ଚେତକୀ ।

ବିଜୟା ନାମକ ହରିଡ଼ା ଲାଉପ୍ରାୟ, ରୋହିଣୀ ଗୋଲାକୃତି, ପୂତନା ବୃହତ ମଞ୍ଜିବିଶିଷ୍ଟ ଓ ସୂକ୍ଷ୍ମ, ଅମୃତା ବହୁରସ ଯୁକ୍ତ ଏବଂ କ୍ଷୁଦ୍ର ବୀଜ, ଅଭୟା ପଞ୍ଚରେଖାଯୁକ୍ତ ଅଟେ । ଯେଉଁ ହରିଡ଼ା ଜଳରେ ବୁଡ଼ିଯାଏ ତାହା ଉତ୍ତମ ଅଟେ ।

ହରୀତକୀ ମନୁଷ୍ୟର ମାତା ସଦୃଶ ମଙ୍ଗଳ କାରିଣୀ ଅଟେ । ଏହା କଦାପି ଅପକାରୀ ହୁଏ ନାହିଁ । ଚରକ ସଂହିତା ଅନୁସାରେ ହରିଡ଼ା ତ୍ରୀଦୋଷହର (ବାତ, ପିତ୍ତ, କଫ) ଏବଂ ଅନୁଲୋମକ ଅଟେ । ଏହା ଗ୍ରହଣୀ ଶୂଳ । ଅତିସାର (ଡାୟରିଆ) ଅର୍ଶ ତଥା ଗୁଳ୍ମ ନାଶକରେ ଏବଂ ପାଚକ ଅଗ୍ନିଦୀପନରେ ସାହାଯ୍ୟ କରେ । ଆୟୁର୍ବେଦ ଶାସ୍ତ୍ରରେ ବର୍ଣ୍ଣିତ ତ୍ରୀଫଳା ମଧ୍ୟରେ ହରିଡ଼ା ଅନ୍ୟତମ ଫଳ । ସାଧାରଣତ ଉତ୍ତମ ଫଳକୁ ଚୈତ୍ର ବୈଶାଖରେ ସଂଗ୍ରହକରି ଶୁଖାଇ ଦିଆଯାଏ ଏବଂ ଶୀତଳ ସ୍ଥାନରେ ବନ୍ଦକରି ରଖି ଦିଆଯାଏ ।

ଏହାର ଅନ୍ୟାନ୍ୟ ଉପଯୋଗ ମଧ୍ୟରେ ସୈନ୍ଧବ ଲବଣ ସହିତ କଫଜ, ଚିନି ସହିତ ପିତ୍ତଜ ତଥା ଘିଅ ସହିତ ବାତଜ ରୋଗରେ ଏହା ଲାଭ ଦାୟକ ଅଟେ । ବ୍ରଣରେ ଲେପ ରୂପେ, ପାଟି ଘାରେ କ୍ୱାଥରେ କୁଳି କରି, ମସ୍ତିସ ରୋଗରେ ଚୂର୍ଣ୍ଣରୂପେ, ରକ୍ତ ବିକାର ଶୋଥରେ ସିଝାଇ, ଶ୍ୱାସ ରୋଗରେ ଚୂର୍ଣ୍ଣ, ଜ୍ୱରରେ ମଧ୍ୟ ଚୂର୍ଣ୍ଣ ରୂପେ ବ୍ୟବହାରର ବିଧି ଅଛି । ଏହା ମଧ୍ୟ ବହୁମୂତ୍ର ରୋଗରେ ମୁଥାମୂଳ ସହିତ ସେବନ କରାଯାଏ ।

ଜୀର୍ଣ୍ଣକାୟା ଅବସାଦ ଗ୍ରସ୍ତ ମନଃସ୍ଥିତି, ଦୀର୍ଘ ଉପବାସରେ, ପିତ୍ତାଧିକ୍ୟ ତଥା ଗର୍ଭବତୀ ମହିଳାଙ୍କ ପାଇଁ ଏହାର ପ୍ରୟୋଗ ଶାସ୍ତ୍ରଦ୍ୱାରା ନିଷିଦ୍ଧ କରାଯାଇଛି ।

## ୪୭. ହଳଦୀ (CURCUMA LONGA)

ହଳଦୀ ସହିତ ସମସ୍ତେ ପରିଚିତ । ପାକଶାଳାରେ ହଳଦୀର ବ୍ୟବହାର ହେଉଥିବା ବେଳେ ମଧ୍ୟ ଏହାର ଔଷଧୀୟ ପ୍ରଯୁକ୍ତି ବିଶେଷ ଭାବେ ଦେଖାଯାଏ । ଏହା ସାଧାରଣତଃ ୩ ପ୍ରକାର ୧- ସାଧାରଣ ହଳଦୀ, ୨- କର୍ପୁର ହଳଦୀ, ୩-ବଣ ହଳଦୀ । ଗଦଗଛପରି ଗଛ ସର୍ବତ୍ର ଦେଖାଯାଏ । ମାଟି ତଳେ ସାରୁ ଆଦିପରି ଏହାକୁ ଅମଳ କରାଯାଇ ଶୁଖାଇ ରଖାଯାଏ । ଏହାର ଔଷଧୀୟଗୁଣ ଅସୀମ ।

ଏହା କଟୁ ମିଶ୍ରିତ ତିକ୍ତରସ । ଶୀତଳ ଶାନ୍ତିକାରକ, ବର୍ଣ୍ଣବର୍ଦ୍ଧକ, ରକ୍ତ ପରିଷ୍କାରକ, ଦାହ ନିବାରକ, ନିଦ୍ରାକର, ବିଷ ନାଶକ ଓ କୃମି, କୁଷ୍ଠ, ବ୍ରଣ, ଶୋଥ, ଗଳଗଣ୍ଡ, ପୀନସ, ପ୍ରମେହ, ମେହ, ପାଣ୍ଡୁ, କାମଳ, ଚର୍ମଦୋଷ ରକ୍ତଦୃଷ୍ଟି, ପିତ୍ତଜ ରୋଗ, କଣ୍ଡୁ ପ୍ରଭୃତି ଯାବତୀୟ ରୋଗରେ ଉପକାରୀ । ୟୁନାନୀ ଚିକିତ୍ସା ବିଜ୍ଞାନରେ ମଧ୍ୟ ଏହାର ବହୁଳ ଉପକାରୀତା ବର୍ଣ୍ଣିତ ଅଛି ।

## ୪୮. ହିଞ୍ଜଳ

## (BARRINGTONIA ACUTANCULA)

ହିଞ୍ଜଳ ବୃହତକାୟ ବୃକ୍ଷ ଜଳାଶୟ ସମୀପବର୍ତ୍ତି ସ୍ଥାନରେ ଉତ୍ପନ୍ନ ହୋଇଥାଏ । ଏହାର ଫୁଲ ଖୁବ୍ ବାସନାଯୁକ୍ତ ଏବଂ ହାରତୁଲ୍ୟ ହାତେ ଦେଢ଼ହାତ ଲମ୍ବରେ ତଳକୁ ଓହଳି ଥାଏ । ଏହା ଅତ୍ୟନ୍ତ ଉପକାରୀ ବୃକ୍ଷ ।

ହିଞ୍ଜଳ କଟୁ ଯୁକ୍ତ କଷାୟ ରସ, ମଳ ରୋଧକ, କଫ ପିତ୍ତକାରକ ଶୀତବୀର୍ଯ୍ୟ, ସ୍ନିଗଧ, ଗୁରୁପାକ ଓ ରକ୍ତ ରୋଧକ । ଏହା ବାୟୁ, ବ୍ରଣ, କ୍ଷତ, ଦାନ୍ତ ମୂଳ କ୍ଷତ, ଜିହ୍ୱାକ୍ଷତ, ପ୍ରଭୃତିରେ ଉପଶମ କାରକ ଅଟେ । ଏହାର ଛାଲି ଫୁଲ ଓ ପତ୍ର ସାଧାରଣତଃ ଔଷଧ ରୂପେ ବ୍ୟବହାର ହୋଇଥାଏ ।

■ ହିଞ୍ଜଳ ଛାଲିକୁ ଜଳରେ ସିଝାଇ ସେହି ଜଳକୁ କୁଳି କଲେ ଦନ୍ତ ମୂଳ

କ୍ଷତ, ଜିହ୍ୱାକ୍ଷତ, ତୁଣ୍ଡ ଘା ଆରୋଗ୍ୟ ହୁଏ ।

- ଏହାର ଫୁଲକୁ ଉଷୁନା ଚାଉଳ ସହ ବାଟି ନିଆଁରେ ଅଳ୍ପ ଉଷୁମ କରି ଖୁଆଇଲେ ଗୋରୁମାନଙ୍କର ଝାଡ଼ା ନିବାରିତ ହୁଏ ।
- ଛାଲିର ଚୂର୍ଣ୍ଣ ଯେକୌଣସି ଘା ଉପରେ ପକାଇଲେ ଘା ଅଳ୍ପଦିନରେ ଶୁଖିଯାଏ ।
- ଏହାର ପତ୍ରକୁ ଛେଚି ରସ ବାହାର କରି ତା ସହିତ ଅଳ୍ପ ମହୁ ମିଶାଇ ସେବନ କଲେ ଆତିସାର ଓ ରକ୍ତାତିସାର ନିବାରିତ ହୁଏ ।
- ଏହାର କୋମଳ ପତ୍ର ସହିତ ଗୋଲମରିଚ ବାଟି ପ୍ରଲେପ ଦେଲେ ବଥ, ବାଗୀ ପ୍ରଭୃତି ବସିଯାଏ ।
- ହଳଦି ସଙ୍ଗରେ ଏହାର ପତ୍ରକୁ ବାଟି ଲଗାଇ ଦେଲେ ପିଲାଙ୍କର ଜ୍ୱର ଏବଂ ଯାବତୀୟ ପ୍ରକାର ଚର୍ମରୋଗ ଭଲ ହୋଇଯାଏ ।
- ପତ୍ରକୁ ବାଟି କଟା ସ୍ଥାନରେ ଲଗାଇଦେଲେ ତାହା ଖୁବ୍‌ଶିଘ୍ର ଆରୋଗ୍ୟ ହୋଇଯାଏ ।
- ଏହାର କ୍ୱାଥରେ ମହୁ ମିଶାଇ ସେବନ କରିଲେ ସମସ୍ତ ପ୍ରକାର ଜ୍ୱର ନିବାରିତ ହୁଏ ।

## ୪୯. ହାଡ଼ଭଙ୍ଗା

## (CISSUS GUADRANGULARIS)

ଏହା ଏକ ଲତା ଜାତୀୟ ଉଦ୍ଭିଦ । କୌଣସି ଗଛରେ ଏହା ମାଡ଼ିଥାଏ । ହାଡ଼ର ଗଣ୍ଠି ଭଳି ଖଣ୍ଡ ଖଣ୍ଡ ହୋଇ ଦେଖାଯାଉଥିବାରୁ ଏହାକୁ ହାଡଭଙ୍ଗା ବୋଲି କୁହନ୍ତି । ଏହା ବୁଢ଼ା ଆଙ୍ଗୁଳି ମୋଟାର କିମ୍ବା ତାଠାରୁ ଟିକେ ଅଧିକ ମୋଟର ଚାରି ଆଂଶୁ ହୋଇ ପବ ପବ ଭାବେ ମାଡ଼ିଥାଏ । ପବ ମୂଳରେ ଗୋଟିଏ ଲେଖାଏଁ କ୍ଷୁଦ୍ର ପତ୍ର ଥାଏ । ଭାଙ୍ଗି ଯାଇଥିବା ହାଡ଼କୁ ଯୋଡ଼ିବାରେ ସାହାଯ୍ୟକରେ ବୋଲି ଏହାକୁ ହାଡ଼ଭଙ୍ଗା ବୋଲି କୁହାଯାଏ ।

ହାଡ଼ଭଙ୍ଗା କଟୁ ତିକ୍ତ ରସ, ଭଗ୍ନ ସଂଯୋଜକ, କୃମିଘ୍ନ, ପାଚକ, ମଳ ଭେଦକ, କୃମି, ଅର୍ଶ, ଚକ୍ଷୁରୋଗ ନିବାରକ ଅଟେ । ଏହାର ପତ୍ର ଓ ଲତା ଔଷଧ ରୂପେ ବ୍ୟବହାର ହୋଇଥାଏ ।

- ହାଡ଼ଭଙ୍ଗା ଲତାକୁ ବାଟି ହାଡ ଭାଙ୍ଗି ଯାଇଥିବା ସ୍ଥାନରେ ଲେପ ଦେଲେ

ଓ ପଟି ବାନ୍ଧି ଦେଲେ ହାଡ଼ ଯୋଡ଼ିହୁଏ ।

- ହାଡ଼ଭଙ୍ଗା ରସରେ ଶୁଣ୍ଠୀ ଓ ସୈନ୍ଧବ ଲୁଣର ଚୂର୍ଣ୍ଣ ମିଶାଇ ସେବନ କରିଲେ ନୂତନ କିମ୍ବା ପୁରାତନ ଆମବାତ ଭଲ ହୋଇଯାଏ ।
- କାଗଜି ଲେମ୍ବୁ ରସରେ ଏହାର ରସକୁ ମିଶାଇ ସେବନ କରିଲେ କର୍ଣ୍ଣ ବଧିରତା ଆରୋଗ୍ୟ ହୁଏ ।
- ହାଡ଼ଭଙ୍ଗା ଲତାକୁ ବାଟି ଗାଈ ଦୁଧ ସହିତ ପ୍ରତ୍ୟେହ ସେବନ କଲେ ଅର୍ଶରୋଗ ଆରୋଗ୍ୟହୁଏ ।
- ହାଡଭଙ୍ଗାକୁ ଜଳରେ ସିଝାଇ କ୍ୱାଥ କରି ସେଥିରେ ଅଳ୍ପ ପିପ୍ପଳୀ ଚୂର୍ଣ୍ଣ ମିଶାଇ ସେବନ କରାଇଲେ ପିଲାମାନଙ୍କ ଉଦରରୁ କୃମି ମାନେ ବିନିଷ୍ଟ ହୁଅନ୍ତି ।

## ୫୦. ହିଡିମିଚା (ENHYDRA FLUCTUANS)

ଏହା ଏକ ଲତା ଜାତୀୟ ଉଦ୍ଭିଦ ଏବଂ ଜଳାଶୟ ନିକଟରେ ବଂଶ ବୃଦ୍ଧି କରିଥାଏ । ଏହାକୁ ଶାକ ରୂପେ ଲୋକମାନେ ଖାଇଥାନ୍ତି । ଏହା ପ୍ରାୟ ସର୍ବତ୍ର ଦେଖିବାକୁ ମିଳେ ।

ଏହା ତିକ୍ତରସ, ଶୀତଳ, ସ୍ମାରକ, ଦୃଷ୍ଟିଶକ୍ତି ବର୍ଦ୍ଧକ ମସ୍ତିଷ୍କର ସ୍ନିଗ୍ଧତା କାରକ, ଏବଂ ବାତ, ପିତ୍ତ, ବାୟୁ କଣ୍ଡୁ, କ୍ଷତ ଦୃଷ୍ଟିଶକ୍ତି ହୀନତା, କଫଦୋଷ, ବ୍ରଣ, କୁଷ୍ଠ, କଣ୍ଡୁ ଶୋଥ ଓ ମସ୍ତକ ରୋଗ ପ୍ରଭୃତିର ନିବାରକ । ଏହାର ରସ ଔଷଧ ରୂପେ ବ୍ୟବହୃତ ହୁଏ ।

- ଏହାର ରସରେ ଗୋଲମରିଚ ଗୁଣ୍ଡ ମିଶାଇ ସେବନ କଲେ କଣ୍ଡୁ, ଦଦ୍ରୁ ବିବର୍ଚ୍ଚିକା ପ୍ରଭୃତି ରୋଗ ଭଲ ହୋଇଯାଏ ।
- ଏହାର ରସ ସଙ୍ଗରେ ଭଲ ରାଶିତେଲ ମିଶାଇ ମାଲିସ୍ କଲେ ସମସ୍ତ ପ୍ରକାର ମୁଣ୍ଡରୋଗ ଚକ୍ଷୁରୋଗ ପ୍ରଭୃତି ନିବାରିତ ହୁଏ ।
- ଲହୁଣୀ ସଙ୍ଗରେ ଏହାର ରସ ମିଶାଇ ସେବନ କରିଲେ ଅନ୍ତବିକାର ନଷ୍ଟ ହୁଏ ।
- ପ୍ରତ୍ୟେହ କେବଳ ଏହାର ରସ ସେବନ କରିଲେ ପିତ୍ତ ବିକାର ବିନାଶ ହୁଏ ।
- ଏହାର ରସରେ ମହୁ ମିଶାଇ ସେବନ କରିଲେ ବାତ, ପିତ୍ତ, ବାୟୁ, ମସ୍ତକ ଭ୍ରମ, ଅନ୍ଧାରକଣା, କୃମି, କଣ୍ଡୁ, କୁଷ୍ଠ, ବ୍ରଣ ଓ ଯାବତୀୟ କ୍ଷତ ନିବାରିତ ହୁଏ ।



ଶାନ୍ତିସେବା କେନ୍ଦ୍ର (ଜହ୍ନା) ଦ୍ୱାରା ପ୍ରସ୍ତୁତ ଏହି ପୁସ୍ତକଟି ଭାରତ ସରକାରଙ୍କ ଜାତୀୟ ପରିବେଶ ସଚେତନତା ଅଭିଯାନ (NEAC) ସହାୟତାରେ ପ୍ରକାଶ ଲାଭ କରୁଛି ।